ପ୍ରତିଷ୍ଠାତା - ରାମକୃଷ୍ଣ ନନ୍ଦ




*ଉପଦେଷ୍ଟାମଣ୍ଡଳୀ*

**ଶ୍ରୀ ସହଦେବ ସାହୁ**
**ଡାକ୍ତର ନିତ୍ୟାନନ୍ଦ ସ୍ୱାଇଁ**
**ଇଂ ପ୍ରଭାତ କୁମାର ନନ୍ଦ**

**ସମ୍ପାଦିକା**

**ଅନସୂୟା ନନ୍ଦ**



**୬୫ ବର୍ଷ, ଅଷ୍ଟମ ସଂଖ୍ୟା**
**ମାର୍ଚ୍ଚ, ୨୦୧୬**
**ବାର୍ଷିକ ମୂଲ୍ୟ--୧୨୦ ଟଙ୍କା**
**ପ୍ରତିଖଣ୍ଡ-- ୧୫ ଟଙ୍କା**

*ଯୋଗାଯୋଗ*
**ତଳତେଲେଙ୍ଗା ବଜାର,**
**କଟକ-୭୫୩୦୦୯**
*ଦୂରଭାଷ* : ୯୮୬୧୦୬୪୮୯୧,
୨୪୨୨୫୯୬, ୨୪୨୦୦୭୫
*email :*
nandaanasuya@hotmail.com
www:odisha publication.com

ଅନ୍ୟାନ୍ୟ ବିଭାଗର ଲେଖକ--
**ପ୍ରତାପ ଚନ୍ଦ୍ର ଭଞ୍ଜ, ଅଜିତାନନ୍ଦ ଗୋସ୍ୱାମୀ, ଇଂ ପ୍ରଭାତ ନନ୍ଦ, ଯୁଗଳ କିଶୋର ଷଡ଼ଙ୍ଗୀ ।**

**ଗଳ୍ପ ଓ ଜୀବନୀ**



**କବିତା**



**ଜ୍ଞାନ-ବିଜ୍ଞାନ**



**ମନୋରଞ୍ଜନ**



## ଆମ ଚିଠି ମୁଣିରୁ

**ଏଫ୍.ସି.ଆଇ, ବିକ୍ରମପୁର, ଅନୁଗୋଳରୁ ଶ୍ରୀ ଅଜୟ କୁମାର ପଟ୍ଟନାୟକ**-- ଜାନୁଆରୀ ମାସର ପତ୍ରିକାରେ ସୋନି ଗୁରୁମା, ମାଙ୍କଡ଼ ଖୋଲିଲା ଡାକ୍ତରଖାନା, ମଥା ମୋ ଯାଉଛି ନଇଁ, ମୋତେ ଭଲଲାଗେ, ଟିକି ପିଲାଠାରୁ ଅକଲ ଶିଖ ଇତ୍ୟାଦି ଗଳ୍ପ ଓ କବିତା ବେଶ୍ ମନୋରଞ୍ଜକ ଓ ହୃଦୟସ୍ପର୍ଶୀ ହୋଇଛି । ଲେଖକମାନଙ୍କୁ ଧନ୍ୟବାଦ ।

**ପୁଆଣିଆଁ, ଗମ୍ଭାରିଡ଼ିହି, ନୟାଗଡ଼ରୁ ଶ୍ରୀ ରସାନନ୍ଦ ଘଡ଼େଇ**- ସଂସାର ଖୁବ୍ ସୁନ୍ଦର ହେଉଛି । ଲେଖନୀର ପାଠଶାଳା ଓ ଶବ୍ଦଧନ୍ଦା ଖୁବ୍ ଆକର୍ଷଣୀୟ । ଯୁଗଯୁଗ ଧରି ଏହି ସାହିତ୍ୟ ପତ୍ରିକାଟି ପ୍ରକାଶ ପାଉଥାଉ– ଏତିକି ମା'କଟକ ଚଣ୍ଡୀଙ୍କଠାରେ ଅଳି ।

**ଆଲୋକ ନଗର, ବଲାଙ୍ଗୀରରୁ ଡାକ୍ତର ଅଶୋକ କୁମାର ସେଠୀ**-- ଏ ମାସର ପତ୍ରିକା ମୋର ହସ୍ତଗତ ହୋଇଛି । ସମସ୍ତ ଲେଖା ମନଛୁଆଁ ହୋଇଛି ।

**ନୀଳାଦ୍ରି ବିହାର, ଭୁବନେଶ୍ୱରରୁ ନିର୍ମଳା କୁମାରୀ ମହାପାତ୍ର**-- ଡିସେମ୍ବର ମାସ ସଂସାରରେ ପଦ୍ୟ "ଭୁଲିବାନି ଆମ ପରମ୍ପରା" ପଢ଼ିଲି । ପୃଥିବୀର ବହୁ ସଭ୍ୟତା ଭୋଗବାଦ ହେତୁ ଲୋପ ପାଉଛି । ଅପରିଣାମଦର୍ଶୀ ମଣିଷ ପଞ୍ଚଭୂତକୁ ହତାଦର କରୁଥିବାରୁ ଆଜି ନଈରେ ପାଣି ନାହିଁ । ବୋଇତବନ୍ଦାଣ ନାଁରେ ଜଳ ପ୍ରଦୂଷଣ ଏକ ଭୁଲ୍ ପରମ୍ପରା । ଲେଖା ମାଧ୍ୟମରେ ସଂସ୍କାର ଆସୁ । ଏ ପରମ୍ପରାକୁ ପରିତ୍ୟାଗ କରାଯାଉ ।

**କନ୍ଧବେରେଣୀ, ଚମ୍ପେଶ୍ୱର, କଟକରୁ ଶ୍ରୀନିବାସ ଖଟୁଆ**- ଓଡ଼ିଶାରେ ଅନେକ ପତ୍ରିକା ବାହାରୁଛି, ହେଲେ ତା' ଭିତରେ 'ସଂସାର' ନିଆରା ଲାଗେ । ଏହାର କଳେବର ବହୁବିଧ ଲେଖାକୁ ନେଇ ପରିପୁଷ୍ଟ । ପଢ଼ିଲାବେଳେ ବହୁତ ଜୀବନ୍ତ ଲାଗେ । ପଢ଼ା ସରିଲା ବେଳକୁ କେମିତି ଗୋଟିଏ ଆପଣାପଣ ଛାଡ଼ିଦେଇ ଗଲାପରି ଲାଗେ, ଯାହାକି ପାଠକଠାରେ ଭାବାନ୍ତର ଆଣେ । ସେହି ଭାବାନ୍ତର ଜଣେ ସଫଳ ସାହିତ୍ୟିକର ପରିଚୟ ସୃଷ୍ଟି କରେ ।

**ପାଣ୍ଡବ ନଗର, ବଡ଼ଗଡ଼ ବ୍ରିଟ କଲୋନୀ, ଭୁବନେଶ୍ୱରରୁ ଶ୍ରୀ ପବିତ୍ର କବି**– ଅଧୁନା ପ୍ରକାଶ ପାଉଥିବା ସମସ୍ତ ଶିଶୁ ପତ୍ରିକା ମଧ୍ୟରେ 'ସଂସାର' ପୁରାତନ । ପତ୍ରିକାରେ ଲେଖାର ଶୈଳୀ, ଲେଖକମାନଙ୍କର ସହଯୋଗିତା ପୂର୍ବପରି ରହିଛି । ସାଧାରଣଜ୍ଞାନ, ବୁଦ୍ଧିପରୀକ୍ଷା, ଧୂପକାଠି, ପୁସ୍ତକ ପରିଚୟ ଇତ୍ୟାଦି ନିୟମିତ ବିଷୟ ଶିଶୁମାନଙ୍କର ଜ୍ଞାନରେ ଉନ୍ନତି ଆଣିବା ସଂଗେସଂଗେ ଚରିତ୍ରରେ ସଂଶୋଧନ ଆଣିଥାଏ । ଏବେ ମଧ୍ୟ ଠିକ୍ ସମୟରେ ପତ୍ରିକା ପାଉଥିବାରୁ ତାହା ଆଦରଣୀୟ ହୋଇପାରୁଛି । ମୁଁ ପତ୍ରିକାର ଉତ୍ତରୋତ୍ତର ଉନ୍ନତି କାମନା କରୁଛି ।

**ବାରିପଦାରୁ ଶ୍ରୀ ବୃନ୍ଦାବନ ଦାଶ**– ସଂସାର ୬୫ ବର୍ଷର ୭ମ ସଂଖ୍ୟା ପାଇଲି । ସଂସାର ପରିବାରର ଏହି ମହାନତା, ମହାନୁଭବତା ନିକଟରେ ୭୬ ବର୍ଷରେ ମଧ୍ୟ ମୋ ମୁଣ୍ଡ ନଇଁଯାଉଛି । ସାମ୍ପ୍ରତିକ ଓଡ଼ିଆ ଶିଶୁ କିଶୋର ସାହିତ୍ୟ ଓ ପତ୍ରିକା ପ୍ରେକ୍ଷାପଟରେ ସଂସାର ମହାନ୍ ବାର୍ତ୍ତା ବହନ କରେ ।

**ବାରିପଦାରୁ ବାନପ୍ରସ୍ଥି ବଙ୍ଗାଳୀ ଚରଣ ଯତି**– 'ସଂସାର' ପତ୍ରିକା ମତ୍ସ୍ୟ ଅବତାର ପରି ତା'ର କାୟା ବିସ୍ତାର କରି ଚାଲିଛି । ଏଥିପାଇଁ ସଂସାର ପରିବାର ଧନ୍ୟବାଦାର୍ହ ।




କଟକ ଜିଲ୍ଲା, କଣ୍ଟାପଡ଼ାର ଗ୍ରାମାଞ୍ଚଳ ବିକାଶ ପରିଷଦ ପକ୍ଷରୁ କଣ୍ଟାପଡ଼ାର ସର୍ବପ୍ରଥମ ସରପଞ୍ଚ, ଆଦର୍ଶ ଶିକ୍ଷକ ତଥା 'ସଂସାର'ର ଆଜୀବନ ସହଯୋଗୀ **ଶ୍ରୀଯୁକ୍ତ ବ୍ରଜକିଶୋର ନନ୍ଦ** (ପ୍ରତିଷ୍ଠାତା ସମ୍ପାଦକଙ୍କର ବଡ଼ଭାଇ ସ୍ୱର୍ଗତ ବାଳକୃଷ୍ଣ ନନ୍ଦଙ୍କର ଜ୍ୟେଷ୍ଠପୁତ୍ର)ଙ୍କୁ ବରିଷ୍ଠ ନାଗରିକ ସମ୍ମାନ ପ୍ରଦାନ କରାଯାଇଛି ।

ତାଙ୍କର ଏହି ଗୌରବରେ ସଂସାର ପରିବାର ଗୌରବାନ୍ୱିତ । ତାଙ୍କର ଦୀର୍ଘ ଜୀବନ କାମନା କରିବା ସହିତ ତାଙ୍କୁ ଅଭିନନ୍ଦନ ଜଣାଉଛୁ ।

**'ସଂସାର' ପରିବାର**

---

**ଏ ମାସ ପ୍ରଚ୍ଛଦରେ 'ବୃହତ୍‌କାୟ ପ୍ରବାଳ ପ୍ରାଚୀର' ବିଷୟରୁ ଚିତ୍ର ପ୍ରଦତ୍ତ ।**



# ଗୀତରେ ଗୀତରେ ସଂସାର

ଶ୍ରୀ ଅଜୟ କୁମାର ପଟ୍ଟନାୟକ

ଝଗଡ଼ା– ଏକ ବହୁ ପରିଚିତ ଶବ୍ଦଟିଏ । ଝଗଡ଼ା କରିବାର ଅନୁଭୂତି ଯାହାର ନାହିଁ, ସେ ବୋଧହୁଏ ଏକ ସାମାଜିକ ପ୍ରାଣୀ ନୁହେଁ । ଛୋଟପିଲାମାନେ ଝଗଡ଼ା କରିବାରେ ଓସ୍ତାଦ୍ । ଛୋଟ ଛୋଟ କଥାରେ ଗମ୍ଭୀର ଭାବରେ ବନ୍ଦ ହୋଇଥିବା ପାଟି ଉପରେ ପ୍ରଥମେ ଆଙ୍ଗୁଠି ରଖି, "ତୋର ମୋର କଟି !" ବୋଲି କହି କିଛି ସମୟ ପର୍ଯ୍ୟନ୍ତ କଥାବାର୍ତ୍ତା ବନ୍ଦ କରିଦିଅନ୍ତି । କିନ୍ତୁ ପୁଣି ଦେଖିଲା ବେଳକୁ ସାଙ୍ଗ ହୋଇ ଖେଳୁଛନ୍ତି । ଖିଲିଖିଲି ହସୁଛନ୍ତି ।

ପରିବାରର ସଦସ୍ୟମାନଙ୍କ ଭିତରେ ମଧ୍ୟ ଝଗଡ଼ା ହୁଏ । ତଳଉପର ଭାଇଭଉଣୀଙ୍କ ଝଗଡ଼ା ତ ନିତିଦିନିଆ କଥା । ପରସ୍ପର ବିରୋଧରେ ଅଭିଯୋଗ ଶୁଣି ଶୁଣି କାନ ପାଚିଯାଏ ବାପା, ମା, ଗୁରୁଜନମାନଙ୍କର । ବିଭିନ୍ନ ଉପାୟରେ ସେମାନଙ୍କୁ ବୁଝାଇସୁଝାଇ ସେମାନଙ୍କ କଳି ସମାପ୍ତ କରିବାକୁ ପଡ଼େ । ଏ ପ୍ରକାର ଏକ ପରିସ୍ଥିତିରେ ଝଗଡ଼ା କରୁଥିବା ଭାଇଭଉଣୀଙ୍କ ଆଡ଼କୁ ଚାହିଁ ନାକ ଛିଞ୍ଚାଡ଼ି ସେମାନଙ୍କ ଜେଜେମା କହୁଥିବା ଦୃଷ୍ଟାନ୍ତ ହେଲା– "ଛି, ଛି ! ସେଇ ନାକ ସେଇ ଶିଂଘାଣି, ଲାଜ ନାହିଁ ତମ ଭାଇଭଉଣୀ !" ଏତିକିରେ ଝଗଡ଼ା ବନ୍ଦ ହୋଇ ନାକକୁ ଧରି ହସିବା ଆରମ୍ଭ ହୋଇଯାଏ । ପୁଣି ଖେଳକୁଦ । ପୁଣି ହୋ ହଲ୍ଲା ।

ସ୍ୱାମୀ-ସ୍ତ୍ରୀଙ୍କ ମଧ୍ୟରେ ଝଗଡ଼ା ହୁଏ । କଥାବାର୍ତ୍ତା ବନ୍ଦ । ତା'ପରେ ପୁଣି କଥାବାର୍ତ୍ତା, ହସଖୁସି ଏବଂ ଘରସଂସାର । ଏଥିପାଇଁ ଦୁଇଜଣଙ୍କ ମଧ୍ୟରୁ କେହି ବି ଜଣକୁ ନିଜ ଜିଦ୍ ପରିତ୍ୟାଗ କରି ପ୍ରଥମେ କଥା କହିବାକୁ ପଡ଼େ । ଅନ୍ୟଜଣଙ୍କ ଏଇ ମୁହୂର୍ତ୍ତକୁ ସତେଯେପରି ଅପେକ୍ଷା କରି ରହିଥାଏ । ତା'ପରେ ସବୁ କିଛି ସ୍ୱାଭାବିକ ହୋଇଯାଇଥାଏ ।

ହରିଚନ୍ଦନପୁର ଗ୍ରାମର ଏକ କୃଷକ ପରିବାର କଥା କିନ୍ତୁ ସମ୍ପୂର୍ଣ୍ଣ ନିଆରା । ପରିବାର କହିଲେ ସ୍ୱାମୀ ନିରଞ୍ଜନ ପରିଡ଼ା ଏବଂ ସ୍ତ୍ରୀ ଲିଲି । ଏକବର୍ଷର ପୁତ୍ରସନ୍ତାନ ବ୍ୟତୀତ ଆଉ କେହି ବୟସ୍କ ବ୍ୟକ୍ତି ନ ଥାନ୍ତି ଘରେ । ନିରଞ୍ଜନର ମା' ତା'ର ଛୁଆ ବେଳୁ ଆରପାରିକୁ ଯାଇସାରିଥିଲେ । ପରିବାରର ସମସ୍ତ ବୋଝ ମୁଣ୍ଡାଇଥିବା ବାପା ମଧ୍ୟ ନିରଞ୍ଜାର ବାହାଘର ପରେ ମାଆର ପଦାଙ୍କ ଅନୁସରଣ କଲେ । ବର୍ତ୍ତମାନ କିନ୍ତୁ ବେଶ୍ ହସିଲା ପୂରିଲା ଲାଗୁଥିଲା ନିରଞ୍ଜନର ଛୋଟ ପରିବାର । ସ୍ୱାମୀ-ସ୍ତ୍ରୀଙ୍କ ମଧ୍ୟରେ ଭଲ ବୁଝାମଣା ଏବଂ ସ୍ନେହ ଥିଲା । ଏକ ଆଦର୍ଶ ଯୋଡ଼ି ରୂପେ ନିରଞ୍ଜନ ଏବଂ ଲିଲିର ଆଦର ଥିଲା ହରିଚନ୍ଦନପୁର ଗ୍ରାମରେ ।

କୌଣସି କାରଣକୁ ନେଇ ହଠାତ୍ ଦିନେ ଝଗଡ଼ା ହେଲା ନିରଞ୍ଜନ ଏବଂ ଲିଲି ମଧ୍ୟରେ । ପ୍ରବଳ ପାଟିତୁଣ୍ଡ,

କଥା କଟାକଟି, କନ୍ଦାକଟା, ରୁଷାରୁଷିର ପର୍ବ ସରିଲା ପରେ ଅବସ୍ଥା ଟିକେ ଶାନ୍ତ ପଡ଼ିଲା ସିନା, କଥାବାର୍ତ୍ତା ବନ୍ଦ ହୋଇଗଲା ପରସ୍ପର ମଧ୍ୟରେ । କଥା ହେଲା ଅନ୍ୟମାନେ ସିନା ମୁହଁ ଚୁହାଁଚୁହିଁ ନ ହୋଇ କଥାବାର୍ତ୍ତା ବନ୍ଦ କଲେ ଚଳିବ– ସ୍ୱାମୀ, ସ୍ତ୍ରୀ ଯଦି ସେପରି କରନ୍ତି, ତା'ହେଲେ ସଂସାର ଚଳିବ କେମିତି ? ତା'ପରେ ଯଦି ଛୋଟ ଛୁଆଟାଏ ଥାଏ, ତା' ଅବସ୍ଥା ତ ସାଂଘାତିକ ହୋଇ ପଡ଼ିବ । କିନ୍ତୁ ସେପରି କିଛି ଘଟିଲାନି ନିରଞ୍ଜନ ଏବଂ ଲିଲିଙ୍କ ମଧ୍ୟରେ । କଥା ହେଉ ନ ଥାନ୍ତି ସିନା ପ୍ରଗାଢ଼ ପ୍ରେମ ଥାଏ ପରସ୍ପର ମଧ୍ୟରେ । ତେଣୁ କୌଣସି ମତେ ଝଗଡ଼ା ହେବା ଦିନଟି କଟିଗଲା ସୁରୁଖୁରୁରେ । କିଏ ପ୍ରଥମେ କଥା କହିବ ଭାବୁଥାନ୍ତି ଉଭୟେ, କିନ୍ତୁ ଯିଏ ଯା'ର କାମ କରି ଚାଲିଥାନ୍ତି ଠିକ୍ ଠିକ୍ ।

ଝଗଡ଼ାର ଦ୍ୱିତୀୟ ଦିନ । ଭୋର୍ ପାଞ୍ଚଟା ହେବ । ଉଭୟେ ନିରଞ୍ଜନ ଏବଂ ଲିଲି ଉଠି ସାରିଥାନ୍ତି । ସକାଳ ନିତ୍ୟକର୍ମରେ ବ୍ୟସ୍ତ ଥାଏ ନିରଞ୍ଜନ । ହଳ ନେଇ ବିଲକୁ ଯିବା ପାଇଁ ପ୍ରସ୍ତୁତ ହେଉଥାଏ ସେ । ମୁଣ୍ଡରେ କିନ୍ତୁ ବୋଝ ଲଦିଲା ପରି ଲାଗିଲା ଲିଲିକୁ । ସେ କିପରି ଜାଣିବ ଯେ ତାର ସ୍ୱାମୀ ହଳ କରିବା ପାଇଁ କେଉଁ ବିଲକୁ ଯିବ, ଜାଣିଲେ ତ ସେ ତା ପାଇଁ ଘୋଟଣା ନେଇ ଯିବ ! ତାଙ୍କର ନିଜର ବୋଲି ମାତ୍ର ଦୁଇମାଣ ଜମି ଥାଏ । ସେଥିରେ ପରିବାର ଚଳିବା ମୁସ୍କିଲ୍ । ତେଣୁ ନିରଞ୍ଜନ ଆଖପାଖ ଗ୍ରାମଗୁଡ଼ିକର ବିଲକୁ ଭାଗଚାଷ କରୁଥାଏ । ହଳ କରିବାକୁ କେଉଁ ଗାଁ ବିଲକୁ ଯିବ, ଆଗରୁ ଲିଲିକୁ କହି ଯାଉଥିବାରୁ ସେ ରୋଷେଇବାସ ସାରି ମଧ୍ୟାହ୍ନ ବେଳକୁ ଖାଦ୍ୟପଦାର୍ଥ ନେଇ ପହଞ୍ଚିଯାଏ ସେହି ସ୍ଥାନରେ । ଆଜି କ'ଣ କରିବ ସେ ?

ହଠାତ୍ ଲିଲି ମୁଣ୍ଡକୁ ଏକ ଉପାୟ ଜୁଟିଗଲା । ଶୋଇଥିବା ପୁଅକୁ ଉଠାଇ ଦୁଇହାତରେ ଉପରକୁ ଟେକି ଧରି ଗେଲ କଲା ପରି କହିଲା–

"ତାକ୍ ଧେଇକି, ତାକ୍ ଧେଇକି
ଆଜି ହଳ ଯିବ କେଉଁ ଠାଇଁକି, କେଉଁ ଠାଇଁକି ?"

ନିରଞ୍ଜନ ସେତେବେଳେ ଘର ଅଗଣାରେ ବସି ଦାନ୍ତ ଘଷୁଥାଏ । ଲିଲି ତାକୁ ଶୁଣେଇ ଶୁଣେଇ ତା' ସାମନାରେ ଛୁଆକୁ ଉପରକୁ ଟେକି ପୁଣି ଥରେ ସେପରି କହିଲା । ନିରଞ୍ଜନ ଲିଲିର ମନକଥା ବୁଝିଗଲା । ଲିଲିକୁ ସିଧାସଳଖ ନ କହି ସେ ମଧ୍ୟ ପରୋକ୍ଷ ଭାବେ କହିବାକୁ ମନସ୍ଥ କରି ଅଗଣାକୁ ଲାଗିଥିବା ଗୁହାଳରେ ଶୋଇ ପାକୁଳି କରୁଥିବା ବଳଦର ଲାଞ୍ଜ ମୋଡ଼ି ଉଠାଇ କହିଲା–

"ଉଠ୍ ଉଠ୍ ଉଠ୍‌ରେ ବୁଢ଼ା
ଆଜି ହଳ ଯିବ ବେଗୁନାପଡ଼ା"

ଲିଲି କାଳେ ଭଲ ଭାବରେ ଶୁଣି ନ ଥିବ, ଭାବି ବଡ଼ ପାଟିରେ ଗୀତଟିକୁ ଦୁଇ ତିନିଥର ଗାଇ ଶୁଣାଇଦେଲା । ହଠାତ୍ ନିଦ୍ରାଳୁ ଅବସ୍ଥାରେ 'ତାକ୍ ଧେଇକି' ନାଚରେ ସାମିଲ୍ ହୋଇ ତୂରୀ ବଜାଇଲା ପରି କାନ୍ଦୁଥିବା ଶିଶୁପୁତ୍ରକୁ ବୋଧ କଲାବେଳେ ମୁରୁକି ମୁରୁକି ହସୁଥାଏ ଲିଲି । ନିରଞ୍ଜନ ଚଟାପଟ୍ ନିତ୍ୟକର୍ମ ସାରି ଡବାରେ ଥିବା ମୁଢ଼ି ଦୁଇମୁଠା ଚୋବାଇ ହଳଲଙ୍ଗଳ ନେଇ ତରତର ହୋଇ ବେଗୁନାପଡ଼ା ଉଦ୍ଦେଶ୍ୟରେ ବାହାରି ପଡ଼ିଲା ।

ଲିଲି ରୋଷେଇ ସାରି ଛୁଆକୁ କ୍ଷୀର ପିଆଇ ଲୋରି ଶୁଣାଇ ଶୁଆଇଦେଲା । ତା'ପରେ ନିରଞ୍ଜନର ମଧ୍ୟାହ୍ନ ଭୋଜନ ରୂପରେ ପଖାଳ କଂସାଏ, ଶାଗ ଖରଡ଼ା ଏବଂ ଘାଣ୍ଟ ତରକାରି ସହ ଲୁଣ, ଲଙ୍କା ଇତ୍ୟାଦି ଗୋଟିଏ ଟୋକେଇରେ ରଖି ଶୋଇଥିବା ପୁଅକୁ ଘରେ ତାଲା ପକାଇ ଟୋକେଇଟାକୁ ମୁଣ୍ଡାଇ ତରତର ହୋଇ ବିଲକୁ ଚାଲିଲା । ଯାଇ ଦେଖିଲା ନିରଞ୍ଜନ ହଳ କରିବାରେ ବ୍ୟସ୍ତ । ସେ ଖାଦ୍ୟ ନେଇ ପହଞ୍ଚିଗଲା ବୋଲି ଜଣାଇବା

ଉଦ୍ଦେଶ୍ୟରେ ଜୋର୍‌ରେ ଖଣ୍ଡିକାଶ ମାରିଲା । ନିରଞ୍ଜନ ଚାହିଁଲା; କିନ୍ତୁ ଆସିଲା ନାହିଁ । ବୋଧହୁଏ ଲିଲି ଡାକିବା ଯାଏଁ ଅପେକ୍ଷା କରିଥିଲା ସେ । ଲିଲି ମଧ୍ୟ ତା ଜିଦ୍‌ରେ ଅଟଳ । ପ୍ରଥମେ ସେ କିପରି କଥା କହିବ ! ପୂର୍ବପରି ପରୋକ୍ଷ ଭାବରେ କହିବାକୁ ଚିନ୍ତା କଲା ସେ । ଠିକ୍ ସେତିକିବେଳ ଚାଞ୍ଚରା ପଥର ଉପରେ ଥୁଆ ହୋଇଥିବା ଖାଦ୍ୟପଦାର୍ଥ ଦେଖି କାଉଟାଏ ଗଛ ଡାଳରେ ବସି 'କାଆ କାଆ' ହେବାକୁ ଲାଗିଲା । ଲିଲି ମୁଣ୍ଡକୁ ଉପାୟ ଜୁଟିଗଲା । ହଠାତ୍ ଉଚ୍ଚ ସ୍ୱରରେ ସେ କହିବାକୁ ଲାଗିଲା–

"ହଇରେ କାଉ
କାହିଁକି ହେଉଛୁ ରାଉ ରାଉ,
ତୋ ସାହେବଙ୍କୁ କହ
ପଖାଳ, ଶାଗ, ତରକାରି ଖାଉ ।"

ନିରଞ୍ଜନ ଏକଥା ଶୁଣି ଖୁସି ହୋଇ ଗୋଡ଼ହାତ ଧୋଇ ଖାଇବାରେ ଲାଗିଲା । ଏହି ସମୟରେ ପାଖ ପଡ଼ିଆରେ ପଡ଼ିଥିବା ଶୁଖିଲା ଗୋବରଗୁଡ଼ିକୁ ଜାଳେଣି ଉଦ୍ଦେଶ୍ୟରେ ସଂଗ୍ରହ କରି ଟୋକେଇରେ ଭର୍ତ୍ତି କରିଦେଲା ଲିଲି । ନିରଞ୍ଜନ ଖାଇସାରି ପୁଣି କାମରେ ଲାଗିଗଲା । ତା'ପରେ ଦେଖିଲା ଲିଲି ଘଷି ଗୋଟାଇବାରେ ବ୍ୟସ୍ତ ରହି ବାସନ ମାଜୁନି କି ଘରକୁ ଯିବା ନାଁ ଧରୁନି । ପୁଅ ଘରେ ଏକାକୀ ଶୋଇଛି । କାଳେ କାନ୍ଦୁଥିବ, ଏୟା ଭାବି କାଆ କାଆ ରାବୁଥିବା କାଉକୁ ଦେଖି ବଡ଼ପାଟିରେ କହିଲା–

"ଏ କାଉ....ଏ କାଉ.....ଏ କାଉ
କାହିଁକି ହେଉଛୁ ରାଉ ରାଉ
ତୋ ସାହେବାଣୀକୁ କହ
ପିଲା କାନ୍ଦୁଥିବ ଘରକୁ ଯାଉ ।"

ଏକଥା ଶୁଣି ଛୁଆ କଥା ମନେପଡ଼ିଗଲା ଲିଲିର । ଗୋବର ଘଷିଗୁଡ଼ିକ ଚଟାପଟ୍ ଟୋକେଇରେ ଭର୍ତ୍ତି କରି ଦେଖିଲା ଯେ ଟୋକେଇଟି ବହୁତ ଓଜନିଆ ହୋଇଯାଇଛି । ଏକାକୀ ସେ ମୁଣ୍ଡ ଉପରକୁ ଟେକି ପାରୁନାହିଁ । ଏଥିପାଇଁ ଅନ୍ୟଜଣଙ୍କର ସାହାଯ୍ୟ ଦରକାର । ନିକଟରେ ବି କେହି ଦେଖାଯାଉନାହାନ୍ତି ସାହାଯ୍ୟ ମାଗିବା ପାଇଁ । ତେଣେ ନିରଞ୍ଜନ କଣେଇ କଣେଇ ଚାହିଁ ଲିଲି ଘଷି ଟୋକେଇଟିକୁ ମୁଣ୍ଡ ଉପରକୁ ଟେକି ପାରୁନାହିଁ ବୋଲି ଜାଣି ସୁଦ୍ଧା ହଳ ଛାଡ଼ି ଆସୁ ନ ଥାଏ । ଲିଲି ଯେ ପର୍ଯ୍ୟନ୍ତ ମୁହଁ ଖୋଲି ନ ଡାକିଛି, ସେ କେମିତି ଆସିବ ? ସେମିତି ହଳ କରୁଥାଏ ଏବଂ ଲିଲିର ଘରକୁ ଯିବା ଡେରି ହେଲାଣି ବୋଲି ମନେ ମନେ ବିରକ୍ତ ହେଉଥାଏ ସେ ।

ପରୋକ୍ଷ ଭାବରେ ନିରଞ୍ଜନକୁ କେମିତି ଡାକିବ ଭାବୁ ଭାବୁ ହଠାତ୍ ବୁଦ୍ଧି ଜୁଟିଗଲା ଲିଲିର ମନକୁ । ପ୍ରସନ୍ନତା ଦେଖାଗଲା ତା ମୁଖମଣ୍ଡଳରେ । ତା'ପରେ ଉଚ୍ଚସ୍ୱରରେ ବାରମ୍ବାର ଗାଇଲା ସେ–

"ଦି'ଗୋରୁ ମଝିର ଲୋକ
ଘଷି ଟୋକେଇକୁ ମୁଣ୍ଡକୁ ଟେକ ।"

ତତ୍‌କ୍ଷଣାତ୍ ହଳଲଙ୍ଗଳ ଛାଡ଼ି ଆସିଗଲା ନିରଞ୍ଜନ । ଘଷି ଟୋକେଇଟିକୁ ଲିଲି ମୁଣ୍ଡ ଉପରକୁ ଉଠାଇଲା ବେଳକୁ ବିମଳ ମୃଦୁହାସ୍ୟର ଲହରୀ ଖେଳୁଥାଏ ଉଭୟଙ୍କ ଓଠରେ ।

ଦ୍ୱିତୀୟ ଦିନର ସଫଳତାକୁ ନେଇ ବେଶ୍ ଉତ୍ସାହିତ ଥାଏ ଲିଲି । ଦ୍ରୁତ ପଦକ୍ଷେପରେ ଘରକୁ ଗଲାବେଳକୁ ହସର ପ୍ଲାବନ ସୃଷ୍ଟି କରିଥାଏ ତା'ର କୋମଳ ଓଷ୍ଠଯୁଗଳରେ ।

ଗୀତରେ ଗୀତରେ ସଂସାରଟି ରଙ୍ଗିନ୍ ହୋଇ ଉଠୁଥାଏ ତା'ର ।

*ଜବାହର ନବୋଦୟ ବିଦ୍ୟାଳୟ, ଏଫ୍.ସି.ଆଇ, ବିକ୍ରମପୁର, ଅନୁଗୋଳ*

# ସହିପାରେ ଯିଏ

ମାଳାକାର

ଗହଳ ସବୁଜ ପତରରେ ଭରା
ଗଛଟି ଭାରି ସୁନ୍ଦର
ପକ୍ଷୀମାନଙ୍କର ଆଶା ଭରସା ସେ
ତୋଳିଥାନ୍ତି ସେଠି ଘର ।



ଡାଳ, ଫଳ, ଫୁଲ, ପତରକୁ ତାର
ମଣିଷ ଛିଣ୍ଡାଇ ଆଣେ ।
ସହେ ସେ କଷଣ ଯାତନା ସବୁରି
ଜୀବନ ସାର୍ଥକ ମଣେ ।
ଦୂବଘାସଟିଏ ଭୂଇଁରେ ଲୋଟଇ
ମଣିଷ ପାଦରେ ଦଳେ
ପଶୁମାନେ ତା'ର କଅଁଳ ପତର
ପାକୁଳି କରନ୍ତି ହେଳେ ।



ସେହି ଦୂବ ପୁଣି ଈଶ୍ୱରଙ୍କଠାରେ
ପୂଜା ପାଇଁ ଲୋଡ଼ାହୁଏ
ହସି ହସି ସହେ ଯାତନା ସବୁରି
ମଙ୍ଗଳର ଗୀତି ଗାଏ ।
ମାଟି ମାଆ ଆମ ସହୁଛି କଷଣ
ପ୍ରତିବାଦ କରେ ନାହିଁ
ଏ ଜୀବଜଗତ ତାହାର ସନ୍ତାନ
ଗର୍ବ ତା'ର ଆମ ପାଇଁ ।
ସାଗର ଛାତିରେ ମଣିଷର ଯାନ
ଚାଲିଥାଏ ପ୍ରତିକ୍ଷଣ
ଗୋଳାବାରୁଦରେ ପରୀକ୍ଷା ନିରୀକ୍ଷା
ତା'ବକ୍ଷରେ ଅନୁକ୍ଷଣ ।



ତଥାପି ସାଗର ସହିଯାଏ ସବୁ
ତୁଠ ପଥରଟେ ହୋଇ
ଏ ଧରାଧାମରେ ଦୁଃଖକୁ ଆବୋରି
ସୁଖ ସେ ଦିଏ ବିଛାଇ ।
ଆମ ଜାତି ପିତା ଶିକ୍ଷା ଦେଇଛନ୍ତି
ସହିବା ମହତ ଗୁଣ
ସହିପାରେ ଯିଏ ଜିଣିପାରେ ସିଏ
ଏ ଧରାରେ ଜନ ମନ ।

*ନ୍ୟୁ ଇଣ୍ଡିଆ ଆସ୍ୟୁରାନସ୍, ଭଦ୍ରକ*



# ସୁନ୍ଦରୀ ବେଙ୍ଗର ସାହସ

ଶ୍ରୀ ରମାକାନ୍ତ ମଲ୍ଲିକ୍

ବେଙ୍ଗର ଶତ୍ରୁ ହେଉଛି ସାପ । ସାପର ପ୍ରିୟ ଖାଦ୍ୟ ହେଉଛି ମୂଷା ଆଉ ବେଙ୍ଗ । ସେଥିପାଇଁ ବେଙ୍ଗର ସାପ ଉପରେ ଭାରି ରାଗ । ତେଣୁ ସେ ସବୁବେଳେ ସୁଯୋଗ ଖୋଜୁଥାଏ କିପରି ସାପକୁ ପାନେ ଦେବ । ପିଲାମାନେ ଭାବିପାରୁଛ, ବେଙ୍ଗ କେବେ ସାପକୁ ବୁଦ୍ଧି ଶିଖେଇ ପାରିବ !

'ସୁନ୍ଦରୀ ବେଙ୍ଗ' ତାର ଦଶଟି ଛୁଆଙ୍କୁ ନେଇ 'ରୁପା ପୋଖରୀ' କୂଳରେ ଥିବା ସାରୁବୁଦା ମୂଳରେ ଛୋଟ ଘରଟିଏ କରି ରହୁଥିଲା । ସୁନ୍ଦରୀ ବେଙ୍ଗର ବେଳେ ବେଳେ ତା' ପଣ-ଜେଜେମା କିପରି ଗର୍ବ କରି ପ୍ରାଣ ହରାଇଥିଲା ଓ ତା' ପଣ-ଜେଜେବାପା ଗଙ୍ଗଦତ୍ତର ନିର୍ବୁଦ୍ଧିଆ ପଣ ପାଇଁ ଶେଷରେ ତାର ଗୋଟିଏ ବଂଶ ନିବଂଶ ହୋଇଯାଇଥିଲା, ଏ ସବୁ କଥା ମନେପଡୁଥିଲା ।

ଆଜି କିନ୍ତୁ ସେ ଏତେ ସହଜରେ ଛାଡ଼ିବ ନାହିଁ । ନିଜ ପିଲାଗୁଡ଼ାକୁ କ'ଣ ମରଣ ମୁହଁକୁ ଠେଲି ଦେଇ ପାରିବ ?

ଦିନକର କଥା, ସୁନ୍ଦରୀ ସକାଳୁ ସକାଳୁ ପିଲାମାନଙ୍କୁ ତାଗିଦ୍ କରି ସେମାନଙ୍କ ପାଇଁ ଖାଦ୍ୟ ଆଣିବାକୁ ବାହାରକୁ ଚାଲିଗଲା । ଗଲାବେଳେ କହିଗଲା, "ପିଲାମାନେ ମୋର ଫେରୁ ଫେରୁ ଟିକେ ଡେରି ହେବ । ସାବଧାନ ! ବାହାରେ ବୁଲାବୁଲି କରିବ ନାହିଁ ।"

ସଂଜ ହେଇ ଆସିଲାଣି, ଏ ପର୍ଯ୍ୟନ୍ତ ମାଆ ଘରକୁ ଫେରିଲା ନାହିଁ । ପିଲାମାନେ ବ୍ୟସ୍ତ ହୋଇପଡ଼ିଲେଣି । ଠିକ୍ ଏତିକିବେଳକୁ ସୁନ୍ଦରୀ ବେଙ୍ଗ ଘରେ ପହଞ୍ଚିଲା । ମାଆକୁ ଦେଖି ସବୁ ପିଲା ତା' ଚାରିପାଖେ ଘେରିଗଲେ । ସୁନ୍ଦରୀ ବେଙ୍ଗ ପଚାରିଲା, "କିରେ ପିଲାଏ, ଆଜି କ'ଣ କିଛି ଅଘଟଣ ଘଟିଛି କି ?"



ବଡ଼ପୁଅ ଦେବଦତ୍ତ କହିଲା, "ଜାଣିଛ ମାଆ, ଆଜି ଗୋଟିଏ କଳା ସାପ ଆମ ଘର ପଛ ପଟେ ଲୁଚିଗଲା ।" ମାଆ ବେଙ୍ଗ କହିଲା, "ତୁମକୁ ପରା ମନା କରି ଯାଇଥିଲି କେହି ବାହାରକୁ ବାହାରିବ ନାହିଁ । ଏବେ ବେଳ ଖରାପ ଚାଲିଛି । କ'ଣ ପାଇଁ ବାହାରକୁ ବାହାରିଥିଲ ?"

ସବା ସାନପୁଅ କହିଲା, "ନାଇଁ ମା, ଏଇ ପାଖ ଗାଆଁର ଲୋକମାନେ ସେଇ ସାପଟିକୁ ମାରିବାକୁ ଠେଙ୍ଗାବାଡ଼ି ଧରି ଗୋଡ଼ଉଥିଲେ ।'' ବଡ଼ପୁଅ ଦେବଦତ୍ତ

କଥା ଛଡ଼େଇ ନେଇ କହିଲା, "ମାଆ ଲୋ ମାଆ, ବିରାଟ ଏକ କଳା ସାପ କେଉଁଠି ଆମ ବାଡ଼ି ଆଡ଼େ ଲୁଚିଗଲା ଯେ ଗାଆଁ ଲୋକେ ଖୋଜାଖୋଜି କରି ନ ପାଇବାରୁ ଯେଝା ଘରକୁ ପଳେଇଲେ ।"

''ତୁମମାନଙ୍କୁ ଠାକୁରେ ଆଜି ବଞ୍ଚେଇଦେଲେ । ଯଦି ତୁମମାନଙ୍କର କ'ଣ କିଛି ହେଇଯାଇଥାନ୍ତା, ମୁଁ ବଞ୍ଚିପାରିଥାନ୍ତି ତ ?'' ବଡ଼ପୁଅ ମାଆ ମୁହଁକୁ ଚାହିଁ କହିଲା, "ନାଇଁ ମାଆ, ଲୋକମାନଙ୍କର ପାଟିତୁଣ୍ଡ ଶୁଣି ଆମେ ଆମ ଘର ଭିତରେ ପଶିଗଲୁ । ସାପ ଆମକୁ ଦେଖି ପାରିନାହିଁ ।" ପିଲାମାନଙ୍କଠାରୁ ସବୁ କଥା ଶୁଣି ସୁନ୍ଦରୀବେଙ୍ଗ ଚିନ୍ତାରେ ପଡ଼ିଗଲା । ଶତ୍ରୁ ଯେତେବେଳେ ଘର ଅଗଣାରେ ଆଶ୍ରୟ ନେଇଛି, ତାକୁ ଦୟା ଦେଖେଇବା ବୁଦ୍ଧିମାନର କାର୍ଯ୍ୟ ନୁହେଁ । ''ଠିକ୍ ଅଛି, ଯାଅ ମୁଁ ଯାହା ଆଣିଛି ବାଣ୍ଟିକୁଣ୍ଟି ଖାଇଦେଲେ ଚୁପ୍‌ଚାପ୍ ଶୋଇ ପଡ଼ିବ ।"

ମାଆ ତା'ପିଲାମାନଙ୍କୁ ରାତି ସାରା ଜଗି ରହିଲା । ରାତି ପାହି ସକାଳ ହେଲା । ସାପଟି ଲୋକମାନଙ୍କ ଭୟରେ ବାହରକୁ ବାହାରୁ ନ ଥାଏ । ଶୀତଦିନ ଦେହ ଥରିଯାଉଛି । ମନେ ମନେ ଭାବିଲା– ବାହାରକୁ ବାହାରି ଖରା ପୁଇଁଲେ କେମିତି ହୁଅନ୍ତା ?

ସୁନ୍ଦରୀ ବେଙ୍ଗ ମନରେ ଭୟ– ଶତ୍ରୁ କେଉଁ ଉପାୟରେ ଆକ୍ରମଣ କରିବ; ତାହା ବୁଝିବା କଷ୍ଟକର । ତେଣୁ ସୁନ୍ଦରୀ ସତର୍କ ରହି ସାପର ଗତିବିଧିକୁ ଲକ୍ଷ୍ୟ କଲା । ସାପଟି ଖରା ଖାଇବା ବାହାନାରେ କାଳେ କେଉଁଠି ଶିକାର ମିଳିଯିବ, ଏହା ଭାବି ସୁନ୍ଦରୀ ବେଙ୍ଗ ରହୁଥିବା ଘର ପାଖ ଦେଇ ଯେମିତି ଆସିଛି; ସୁନ୍ଦରୀ ବେଙ୍ଗ ଛକି ରହିଥିଲା, ଗୋଟେ ଖେପାରେ ସାପର ମୁଣ୍ଡକୁ ପାଟିରେ ପୂରାଇ ଢୋକିବାକୁ ଲାଗିଲା । ସାପଟି କିଛି ବୁଝି ପାରିଲା ନାହିଁ । କିନ୍ତୁ ସୁନ୍ଦରୀ ବେଙ୍ଗ ଚିନ୍ତା କଲା, ତା'ର ଶରୀର ଅନୁସାରେ ଏତେ ବଡ଼ ବେଙ୍ଗକୁ ସମ୍ପୂର୍ଣ୍ଣ ଗିଳିବା ଅସମ୍ଭବ । ତେଣୁ ତାକୁ ଅଣନିଶ୍ୱାସୀ କରି ମାରିଦେଲେ କଥା ସରିଲା; କିନ୍ତୁ ବିଧିର ବିଧାନ ଥିଲା ଅଲଗା । ସାପର ମୁଣ୍ଡଟି ବେଙ୍ଗ ପେଟରେ ଥାଇ ସେ ଅଣନିଶ୍ୱାସୀ ହୋଇଯାଉଥାଏ । କ'ଣ କରିବ, ତା' ଜୀବନ ଆଉ କିଛି ସମୟ ରହିଲେ ଚାଲିଯିବ । ସାପ ଭାବିଲା– ସେ ମରିବା ପୂର୍ବରୁ ବେଙ୍ଗ ପେଟରେ ତା' ବିଷ ଛାଡ଼ି ଦେଇ ମରିଯିବ ।

ସତକୁ ସତ ତାହାହିଁ ହେଲା । ସାପବିଷରେ ସୁନ୍ଦରୀ ବେଙ୍ଗର ପ୍ରାଣ ଗଲା । ହେଲେ ସେ ସାପ ମୁଣ୍ଡକୁ ତା' ପାଟିରେ ଚାପି ରଖି ତାକୁ ମାରିଦେଲା । ସୁନ୍ଦରୀ ବେଙ୍ଗ ତା' ନିଜ ଜୀବନକୁ ବାଜି ଲଗାଇ ଦଶଟି ପିଲାଙ୍କ ଜୀବନ ରକ୍ଷା କଲା ।

ପିଲାମାନେ, ''ବୁଝିପାରିଲ ? ସାହସ, ଧୈର୍ଯ୍ୟ ବଳରେ ଯେତେ ବଡ଼ କାର୍ଯ୍ୟ ହେଲେ ମଧ୍ୟ ତାହା ନିଜ ପାଇଁ ତଥା ଅନ୍ୟମାନଙ୍କ ପାଇଁ ମଙ୍ଗଳକର ହୋଇଥାଏ ।"

*ବିବେକାନନ୍ଦ ଶିକ୍ଷା କେନ୍ଦ୍ର, ମାଇନିଂ ରୋଡ୍, କେନ୍ଦୁଝର*

# ପୃଥିବୀର ମହାଦେଶ (୩)

ଶ୍ରୀ ଫକୀର ଚରଣ ପାଢ଼ୀ

**ଇଉରୋପ :** ୩୫ ଡିଗ୍ରୀ ଉତ୍ତର ସମାକ୍ଷରେଖା ଠାରୁ ୭୧ ଡିଗ୍ରୀ ଉତ୍ତର ସମାକ୍ଷରେଖା ଓ ୧୦ ଡିଗ୍ରୀ ପଶ୍ଚିମ ଦ୍ରାଘିମାରେଖା ଠାରୁ ୬୦ ଡିଗ୍ରୀ ପୂର୍ବ ଦ୍ରାଘିମାରେଖା ମଧ୍ୟରେ ଇଉରୋପ ମହାଦେଶ ଅବସ୍ଥିତ । ଉକ୍ତ ମହାଦେଶର ଉତ୍ତର ଦିଗରେ ଉତ୍ତର ମହାସାଗର, ଦକ୍ଷିଣ ଦିଗରେ ଭୂମଧ୍ୟସାଗର, ପଶ୍ଚିମ ଦିଗରେ ଆଟଲାଣ୍ଟିକ୍ ମହାସାଗର ଓ ପୂର୍ବ ଦିଗରେ ଏସିଆ ମହାଦେଶ ରହିଛି ।

ଏହି ମହାଦେଶର କ୍ଷେତ୍ରଫଳ ହେଉଛି ୯୬୯୯୫୫୦ ବର୍ଗକିଲୋମିଟର । ଏହା ପୃଥିବୀ ଭୂ-ଭାଗର ଶତକଡ଼ା ୬.୫ ଭାଗ । ଏହାର ଲୋକସଂଖ୍ୟା ସାତ କୋଟିରୁ ଅଧିକ । ଯେଉଁ ଭୂ-ଭାଗର ତିନି ପାଖ ଜଳ ଦ୍ୱାରା ପରିବେଷ୍ଟିତ ହୋଇଥାଏ, ସେହି ଭୂ-ଭାଗକୁ 'ଉପଦ୍ୱୀପ' କୁହାଯାଏ । ସେହି ଦୃଷ୍ଟିରୁ ଇଉରୋପ ମହାଦେଶର ଉତ୍ତର ଦିଗରେ ଉତ୍ତର ମହାସାଗର, ଦକ୍ଷିଣ ଦିଗରେ ଭୂମଧ୍ୟସାଗର ଓ ପଶ୍ଚିମ ଦିଗରେ ଆଟଲାଣ୍ଟିକ୍ ମହାସାଗର ରହିଥିବାରୁ ଇଉରୋପ ମହାଦେଶ ଏକ ବୃହତ୍ ଉପଦ୍ୱୀପ । ପୁନଶ୍ଚ ଉକ୍ତ ବୃହତ୍ ଉପଦ୍ୱୀପ ମଧ୍ୟକୁ ଉତ୍ତର ଦିଗରେ ଶ୍ୱେତସାଗର, ପଶ୍ଚିମ ଦିଗରେ ଉତ୍ତର ସାଗର, ବଲଟିକ୍ ସାଗର ଓ ବିସ୍କେ ଉପସାଗର ଏବଂ ଦକ୍ଷିଣରେ ଭୂମଧ୍ୟସାଗର, ଆଡ୍ରିଆଟିକ୍ ସାଗର, ଏଜିୟାନ୍ ସାଗର ଓ କୃଷ୍ଣସାଗର ଆଦି ପ୍ରବେଶ କରି ଇଟାଲୀ ଓ ବଲକାନ୍, ଆଇବେରୀୟ, ଡେନ୍‌ମାର୍କ ଓ ସ୍କାଣ୍ଡିନେଭିଆ ଆଦି ଉପଦ୍ୱୀପ ସୃଷ୍ଟି ହେଇଛି । ସୁତରାଂ ଗୋଟିଏ ବୃହତ୍ ଉପଦ୍ୱୀପରେ ଅନେକ ଛୋଟ ଛୋଟ ଉପଦ୍ୱୀପ ଥିବାରୁ ଇଉରୋପକୁ 'ଉପଦ୍ୱୀପମୟ ଉପଦ୍ୱୀପ' କୁହାଯାଏ ।

ଏହି ମହାଦେଶରେ କୋଇଲା, ଲୁହା, ମାଙ୍ଗାନିଜ, ତମ୍ବା, ସୁନା, ରୁପା, ଦସ୍ତା, ୟୁରାନିୟମ୍, ପ୍ଲାଟିନମ୍ ଓ ଖଣିଜତୈଳ ମିଳେ । ପୁଣି ଏଠାରେ ଗହମ, ଧାନ, ମକା, ଝୋଟ, ଆଳୁ ଆଦି ପ୍ରଚୁର ପରିମାଣରେ ଉତ୍ପାଦିତ ହୋଇଥାଏ । ଏହି ମହାଦେଶ ବେଶ୍ ଶିଳ୍ପସମୃଦ୍ଧ । ଛୋଟ ଛୋଟ ଶିଳ୍ପ କାରଖାନା ସହିତ ବହୁ ବୃହତ୍ ଶିଳ୍ପକାରଖାନା ମଧ୍ୟ ଏଠାରେ ଦେଖିବାକୁ ମିଳେ । ବିଳାସମୟୀ ନଗରୀ ପ୍ୟାରିସ୍, ଇଉରୋପର ଯୁଦ୍ଧଭୂମି ବେଲଜିୟମ୍, ତୁଷାର ଓ ଅଗ୍ନିର ଦ୍ୱୀପ ଆଇସ୍‌ଲ୍ୟାଣ୍ଡ, ନିଶୀଥସୂର୍ଯ୍ୟର ଦେଶ ନରୱେ, କିଏଲ କେନାଲ୍, ଇଉରୋପର ଖେଳପଡ଼ିଆ ଓ ଶ୍ୱେତ କୋଇଲାର ଦେଶ ସୁଇଜରଲ୍ୟାଣ୍ଡ, ଇଉରୋପର ଶସ୍ୟାଗାର ହଙ୍ଗେରୀ, ବିଶ୍ୱର ସବୁଠାରୁ ଛୋଟ ଦେଶ ଭାଟିକାନ୍‌ସିଟି, ଗୋଲାପ



ଫୁଲର ଦେଶ ବୁଲ୍‌ଗେରିଆ, ସହସ୍ର ହ୍ରଦର ଦେଶ ଫିନ୍‌ଲାଣ୍ଡ, ଜଳ ଉପର ସହର ଷ୍ଟକ୍‌ହୋମ୍, ନିସ୍ତବ୍ଧ ନଗରୀ ଭେନିସ୍, ଭୂମଧ୍ୟସାଗରର ଦ୍ୱାର ଜିବ୍ରାଲେଟର, ଇଂଲିଶ ପ୍ରଣାଳୀ ଓ ତୁଷାରାଚ୍ଛାଦିତ ଆଲପସ୍ ପର୍ବତମାଳା ଏହି ମହାଦେଶରେ ରହିଛି ।




**ଅଷ୍ଟ୍ରେଲିଆ :** ସଂପୂର୍ଣ୍ଣ ଦକ୍ଷିଣ ଗୋଲାର୍ଦ୍ଧରେ ଅବସ୍ଥିତ ବିଶ୍ୱର ସବୁଠାରୁ ଛୋଟ ମହାଦେଶ ଅଷ୍ଟ୍ରେଲିଆ ୧୦ ଡିଗ୍ରୀ ଦକ୍ଷିଣ ସମାକ୍ଷରେଖା ଠାରୁ ୪୮ ଡିଗ୍ରୀ ଦକ୍ଷିଣ ସମାକ୍ଷରେଖା ଓ ୧୧୩ ଡିଗ୍ରୀ ପୂର୍ବ ଦ୍ରାଘିମା ଠାରୁ ୧୫୫ ଡିଗ୍ରୀ ପୂର୍ବ ଦ୍ରାଘିମା ପର୍ଯ୍ୟନ୍ତ ବିସ୍ତାର ଲାଭ କରିଛି । ଏହି ମହାଦେଶର ପଶ୍ଚିମରେ ଭାରତ ମହାସାଗର ଓ ଅନ୍ୟ ତିନି ଦିଗରେ ପ୍ରଶାନ୍ତ ମହାସାଗର ଘେରି ରହିଛି । ଉକ୍ତ ମହାଦେଶର ଚତୁର୍ଦ୍ଦିଗରେ ଜଳଭାଗ ଥିବାରୁ ଏହା ଏକ ଦ୍ୱୀପ ସଦୃଶ; କିନ୍ତୁ ଏହା ଆୟତନରେ ବହୁତ ବଡ଼ ହୋଇଥିବାରୁ ଏହାକୁ ଏକ ଦ୍ୱୀପ କୁହା ନ ଯାଇ ଦ୍ୱୀପ ମହାଦେଶ କୁହାଯାଏ ।

ଅଷ୍ଟ୍ରେଲିଆରେ ମିଳୁଥିବା ଖଣିଜଦ୍ରବ୍ୟ ଭିତରେ ରହିଛି– କୋଇଲା, ସୁନା, ରୁପା, ଲୁହା, ତମ୍ବା,ଟିଣ, ସୀସା ଓ ଦସ୍ତା । ଏଠାରେ ପ୍ରଧାନ ଶସ୍ୟ ଗହମ । ମକା, ବାର୍ଲି ଓ ଆଳୁ ଆଦି ଅର୍ଥକରୀ ଫସଲ ମଧ୍ୟ ଚାଷ କରାଯାଏ । ଏଠାରେ ସେଓ, କମଳା, ଅଙ୍ଗୁର ଆଦି ଫଳ ମିଳେ । ଅଷ୍ଟ୍ରେଲିଆ ଉପକୂଳ ଠାରୁ କିଛି ଦୂରରେ ପ୍ରଶାନ୍ତ ମହାସାଗରରେ ପୃଥିବୀର ବୃହତ୍ତମ ପ୍ରବାଳ ପ୍ରାଚୀର ରହିଛି । ଏଠାକାର ଏଡିଲେଡ ସହରକୁ ଉଦ୍ୟାନ ନଗରୀ, ସିଡ୍‌ନୀ ସହରକୁ ଦକ୍ଷିଣର ରାଣୀ, କୁଇନସ୍‌ଲ୍ୟାଣ୍ଡର ପଶ୍ଚିମାଞ୍ଚଳକୁ ନାହିଁ ନାହିଁ ରାଜ୍ୟ ଓ ନିଉଜିଲ୍ୟାଣ୍ଡକୁ ଦକ୍ଷିଣର ବ୍ରିଟେନ୍ କୁହାଯାଏ । ଏହି ମହାଦେଶ ମଧ୍ୟଭାଗରେ କର୍କଟକ୍ରାନ୍ତି ଯାଇଛି । ଏଠାର ଅଧିକାଂଶ ଅଞ୍ଚଳ ମରୁଭୂମି ଓ ଜନବିରଳ । କଙ୍ଗାରୁ ଓ ଏମୁ ପକ୍ଷୀ ଏଠାରେ ବହୁଳ ଭାବରେ ଦେଖିବାକୁ ମିଳନ୍ତି ।

*ବଜଡ଼ାବେଡା, ଡାବୁଗାଁ, ନବରଙ୍ଗପୁର*

---



ଜଣେ ନକଲୀ ଡାକ୍ତର ରୋଗୀକୁ ଦେଖି କହିଲେ, ''ବ୍ୟସ୍ତ ହୁଅନାହିଁ । ତୁମେ ହୁଏତ ଭଲ ହୋଇଯିବ ନାହିଁ ତ ମରିଯିବ । ଭଲ ହୋଇଗଲେ ତ ସୁଖର କଥା– ମରିଗଲେ ବି ଚିନ୍ତା ନାହିଁ । ମରିଗଲେ ସ୍ୱର୍ଗକୁ ଯିବନାହିଁ ତ ନର୍କକୁ ଯିବ । ସ୍ୱର୍ଗକୁ ଗଲେ ତ ସୁଖର କଥା- ନର୍କକୁ ଗଲେ ବି ଚିନ୍ତା ନାହିଁ । କାରଣ ସେଠାରେ ଥିବା ସାଙ୍ଗମାନଙ୍କ ସହ ହାତ ମିଳାଇବ ।''

--**ଶ୍ରୀ ଅଜିତାନନ୍ଦ ଗୋସ୍ୱାମୀ,** *କଟକ-୧୨*

# ନିର୍ଲୋଭ ଚିକୁନ୍

ଶ୍ରୀ ଗୋବିନ୍ଦ ଚନ୍ଦ୍ର ନାୟକ

ଚିକୁନ୍ ନାମରେ ପିଲାଟିଏ
ଭୁବନେଶ୍ୱରରେ ରହେ ସିଏ ।
ଚେହେରାଟି ତାର ଅସନାମସନା
ଚିରା, ଫଟା ପ୍ୟାଣ୍ଟ୍ ପିନ୍ଧିଥାଏ ।
ଜରି ଗୋଟାଇବା କାମ ତା'ର,
ଦୁନିଆରେ କେହି ନାହିଁ ତା'ର,
ସକାଳରୁ ଉଠି ରାସ୍ତାରେ ଝପଟି
ଅଳିଆରେ ଖୋଜେ କର୍ମ ତାର ।
ସକାଳରୁ ଚିକୁ ସଞ୍ଜ ଯାଏଁ
ସହର ରାସ୍ତାରେ ବୁଲୁଥାଏ
ଜରି ଓ ବୋତଲ ଗୋଟାଇ ଆଣି ସେ
କବାଡ଼ି ଦୋକାନେ ବିକିଦିଏ ।
ଯେତିକି ପଇସା ମିଳେ ତାକୁ
ବହୁତ ହୁଅଇ ଖାଇବାକୁ
ବରା ଓ ପିଆଜି, ଗୁଲୁଗୁଲା କିଣି
ଉପଭୋଗ କରେ ଜୀବନକୁ ।
ଦିନେ ସେ ରାସ୍ତାରେ ଯାଉଥିଲା,
ଚିକ୍‌ମିକ୍ ଜରି ପଡ଼ିଥିଲା
ଖୁସିରେ ତାହାକୁ ଉଠାଇଣ ଦେଖେ
ସୁନାହାରଟିଏ ବାହାରିଲା ।
ସାଙ୍ଗସାଥୀ ଆସି ପହଞ୍ଚିଲେ
କଅଣ ପାଇଲୁ ପଚାରିଲେ
ଦେଖି ସୁନାହାର ଚିକୁନ୍ ହାତରେ
ବିକିବେ ବୋଲିକି ଖୁସି ହେଲେ ।

ଦାମିକିଆ ଏହି ସୁନାହାର
ଜରି ଗୋଟାଇବା ହେବ ଦୂର
ସୁନା ଦୋକାନରେ ବିକିବା ଏହାକୁ
ଖୋଲି ଯିବ ଆମ ଭାଗ୍ୟଦ୍ୱାର ।
ଚିକୁନ୍ କହିଲା, ନାହିଁ ଭାଇ
ପର ଜିନିଷଟି ସିନା ଏହି
ପଡ଼ିଗଲା କା'ର ବାଟେ ଗଲାବେଳେ
ଯାଉଥିବ ତା'ର ଲୁହ ବହି ।
ଖୋଜିବା ତାହାକୁ ଚାଲ ଆମେ
ରାସ୍ତାଘାଟ ଗଳି ପଥ କ୍ରମେ,
ନିର୍ଲୋଭ ହୋଇଣ ଜିନିଷକୁ ଦେଇ
ନାଆଁକୁ ରଖିବା ଧରାଧାମେ ।

ମହିଳାଟି ଆସି ଖୋଜି ଖୋଜି,
ଲୁହରେ ଯାଇଛି ଲୁଗା ଭିଜି,
ସୁନାହାରଟିଏ ପାଇଛ ପିଲାଏ
ରାସ୍ତାରେ ଯାଇଛି ମୋର ହଜି ?
ଚିକୁନ୍ କହିଲା ''ମାଆ ମୋର
କାନ୍ଦ ନାହିଁ ଜମା ଧୈର୍ଯ୍ୟ ଧର
ସୁନାହାରଟିକୁ ପାଇଅଛି ମୁହିଁ
ସାଙ୍ଗ ଭାବୁଥିଲେ ନେବେ ଘର ।

ଯଦି ତୁମ ହାର ତୁମେ ନିଅ
କଅଣ ପ୍ରମାଣ କହିଦିଅ,
ତା'ପରେ ତୁମକୁ ଯା'କୁ ଦେଇଦେବୁ,
ଛୁଟିବ ତୁମର ହସ ସୁଅ ।''
ରସିଦ୍ ଦେଖାଏ ମହିଳାଟି
ଲିପ୍‌ସା ଲେଖା ଅଛି ନାମ ଗୋଟି
ପିଲାଙ୍କ ହାତରୁ ହାରଟିକୁ ନେଇ
ଖୁସିରେ ଟାଣିଲା ଚିକୁ ଚୁଟି ।
କହିଲା, "ପିଲାଏ ଭଲ କଲ,
ନିର୍ଲୋଭ ହୋଇଣ ହାର ଦେଲ,
ସମ୍ବାଦରେ ଏବେ ନାମ ବାହାରିବ
ମୋର ସାଙ୍ଗେ ଏବେ ସବୁ ଚାଲ ।"
ଚାରିଖଣ୍ଡି ଜାମା କିଣି ଦେଇ,
ହୋଟେଲରୁ ଖାଦ୍ୟ ଦେଲା ଖୋଇ
ଖୁସିରେ ମହିଳା ଘରକୁ ତା ଗଲା
ପିଲାଏ ନାଚିଲେ ଥେଇ ଥେଇ ।
ସମ୍ବାଦରେ ନାମ ବାହାରିଲା,
ନିର୍ଲୋଭ ବୋଲିଣ ଛୋଟ ପିଲା
ଚିକୁନ୍ ସହିତ ସବୁ ସାଙ୍ଗସାଥୀ
ସହର ବଜାର ଖୋଜାହେଲା ।
ମୁଖ୍ୟମନ୍ତ୍ରୀ ଦେଲେ ପୁରସ୍କାର
ଦୁଃଖକୁ ତାଙ୍କର କଲେ ଦୂର
ବିଦ୍ୟାଳୟ ସବୁ ପିଲାଙ୍କୁ ପଠାଇ,
ଖୋଲିଦେଲେ ତାଙ୍କ ଖୁସିଦ୍ୱାର ।
ପାଠ ପଢ଼ି ସବୁ ହେଲେ ଖୁସି
ଭାବୁଥା'ନ୍ତି ମନେ ବସି ବସି,
ଏହିପରି ସବୁ ଭଲ କାମ କଲେ
ସରଗ ପଡ଼ିବ ହାତେ ଖସି ।

*ମହାପଦା, ମହିମାଗାଦି, ଢେଙ୍କାନାଳ* ★★




ଶ୍ରୀ ନାମଯଜ୍ଞ ମିଶ୍ର

ଆଦିଅନାଦି ସୃଷ୍ଟି ରଚନା କରି ତାଙ୍କରି ତିନୋଟି ପୁଅ ବ୍ରହ୍ମା, ବିଷ୍ଣୁ, ଶିବ – ଏଇ ତ୍ରିଦେବଙ୍କ ହାତରେ ବିଶ୍ୱବ୍ରହ୍ମାଣ୍ଡର ଭାର ଦେଇ 'ପରିମଳ ଭୂମି'ରେ ଅବସ୍ଥାନ କଲେ । ବ୍ରହ୍ମାଙ୍କୁ ସର୍ଜନ, ବିଷ୍ଣୁଙ୍କୁ ପାଳନ ଓ ଶିବଙ୍କୁ ସଂହାର ଭାର ଦେଲେ । ବ୍ରହ୍ମାଙ୍କ ପତ୍ନୀ ସାବିତ୍ରୀଙ୍କୁ ଶୃଚି, ବିଷ୍ଣୁଙ୍କ ପତ୍ନୀ ଲକ୍ଷ୍ମୀଙ୍କୁ ପଡ଼ିଦାତ୍ରୀ ଓ ଶିବଙ୍କ ପତ୍ନୀ ପାର୍ବତୀଙ୍କୁ ଶକ୍ତିର ଅଧିକାରିଣୀ କଲେ । ଶିବ ଓ ବିଷ୍ଣୁଙ୍କ ମଧ୍ୟରେ ଅଗାଧ ପ୍ରେମ । ଶିବ ବିଷ୍ଣୁଙ୍କୁ ନିଜର ଇଷ୍ଟ ଓ ବିଷ୍ଣୁ ଶିବଙ୍କୁ ନିଜର ଇଷ୍ଟ ବୋଲି ମାନୁଥିଲେ ଓ ପରସ୍ପରର ଭକ୍ତିରେ ବନ୍ଧା ଥିଲେ । ଉଭୟେ ଉଭୟଙ୍କୁ ଦର୍ଶନ ନ କଲା ପର୍ଯ୍ୟନ୍ତ ଆହାର ଗ୍ରହଣ କରୁ ନଥିଲେ ।

ଏହି କ୍ରମରେ ବିଷ୍ଣୁ ଦର୍ଶନକୁ ବାରମ୍ବାର ଶିବଙ୍କ ମନ୍ଦିରକୁ ଯାଇ ସମୟ କାଟୁଥିବା ଦେଖି ଲକ୍ଷ୍ମୀଦେବୀ ଈର୍ଷା କଲେ । ସେ ଭାବିଲେ– ପାର୍ବତୀ ଅନିନ୍ଦ୍ୟସୁନ୍ଦରୀ ଥିବାରୁ

ବିଷ୍ଣୁ ଶିବ ଦର୍ଶନ ଆଳରେ ସେଠାକୁ ଯାଉଛନ୍ତି । ତେଣୁ ଲକ୍ଷ୍ମୀ ପାର୍ବତୀ ସହ କଳିକରି, ପାର୍ବତୀ ବିଷ୍ଣୁଙ୍କୁ କିମିଆଁ କରିଛନ୍ତି ବୋଲି ଆରୋପ କରନ୍ତେ ପାର୍ବତୀ ବି ତାଙ୍କୁ ନାନା କଟୁକଥା କହି ଗାଳିଦେଲେ । କଳି ବଢ଼ି ଉଠିଲା । ଶେଷରେ ଲକ୍ଷ୍ମୀ ରାଗିଯାଇ ଶିବଲୋକ କୈଳାସପୁରୀକୁ ପଡ଼ି ବନ୍ଦ କରିଦେଲେ । ଫଳରେ ଶିବ-ପାର୍ବତୀ ଓ ଶିବଗଣ ଖାଇବାକୁ ନ ପାଇ ବ୍ୟାକୁଳ ହେଲେ । ପାର୍ବତୀ ଏକଥା ଜାଣିଲେ ଓ ସେ ଶକ୍ତି ବଳରେ ଅନ୍ନ ଉତ୍ପାଦନ କରିବାକୁ ବଦ୍ଧପରିକର ହେଲେ । ଶିବଙ୍କୁ ହଳଲଙ୍ଗଳ ନେଇ ଜମି ଚଷିବାକୁ କହି ଆପେ ନିଜ ପିତାଗୃହ ହିମାଳୟରୁ ଶସ୍ୟବୀଜ ଆଣି ବୁଣିଲେ ।

ଲକ୍ଷ୍ମୀ ଏକଥା ଜାଣିବାମାତ୍ରେ ନିଜ ମାଆ ଧରିତ୍ରୀଙ୍କୁ ବୀଜଯାକ ଗ୍ରାସ କରିନେବାକୁ କହିଲେ । ଧରିତ୍ରୀ ସବୁ ବୀଜକୁ ଗିଳିନେଲେ, ଫଳରେ ଶସ୍ୟ କ'ଣ ଫଳିବ, ମଞ୍ଜିଟିଏ ବି ଗଜା ହେଲାନାହିଁ । ଖାଦ୍ୟାଭାବରେ ଶିବଗଣଙ୍କର ଅବସ୍ଥା ଦେଖି ଶିବ ବ୍ୟଥିତ ହେଲେ ଓ ଶେଷରେ ନିରାଶ ହୋଇ କହିଲେ, "ପାର୍ବତୀ ! ଲକ୍ଷ୍ମୀ ପଡ଼ିଦାତ୍ରୀ, ସେ ଯାହାକୁ ଦେବା ବନ୍ଦ କରିଦେବେ, ଶତଚେଷ୍ଟା ସତ୍ତ୍ୱେ ତାକୁ ଅନ୍ନ ମିଳେନାହିଁ । କେବଳ ଗୋଟିଏ ବାଟ ଅଛି, ଆମ୍ଭର ପିତାମାତା ଆଦିଅନାଦି ଗନ୍ଧଗିରି ନିକଟରେ ପରିମଳ ଭୂମିରେ ବାସ କରୁଅଛନ୍ତି । ସଂସାରର ସବୁ ସ୍ଥାନକୁ ଲକ୍ଷ୍ମୀ ପଡ଼ି ଦେବା ବନ୍ଦ କରିପାରିବେ; କିନ୍ତୁ ନିଜ ଶାଶୂଶ୍ୱଶୁରଙ୍କ ସେଇ ଭୂମିକୁ ପଡ଼ି ଯୋଗାଇବା ବନ୍ଦ କରିପାରିବେ ନାହିଁ । ଏଣୁ ଆସ ସେଇଠାକୁ ଯିବା ।"

ହରପାର୍ବତୀ ନିଜ ଗଣଙ୍କୁ ନେଇ ପରିମଳ ଭୂମିରେ ପହଞ୍ଚିଲେ । ଆଦିଅନାଦିଙ୍କୁ ଦର୍ଶନ କଲେ । ସମସ୍ତ ଶିବଗଣ ସୁସ୍ଥରେ ରହିଲେ । ପବିତ୍ର ପରିମଳ ଭୂମିରେ ଅନ୍ନ ବାଧା ନାହିଁ । ଅବସନ୍ତରେ ବସନ୍ତ ବାୟୁ ପ୍ରବାହିତ । ଆମ୍ର, କଦଳୀ, ଜାମୁ, ଜମ୍ବିଳ ଇତ୍ୟାଦି ନାନା ପ୍ରକାରର ଫଳ ପାଚିଫୁଟି ଝଡୁଛି । ଆହାରର ଅଭାବ ନାହିଁ; କିନ୍ତୁ ପାର୍ବତୀ ଲକ୍ଷ୍ୟକଲେ, ଶିବ ଅଭାବ ନ ଥାଇ ବି ଅନ୍ନଜଳ ସ୍ପର୍ଶ କରୁନାହାନ୍ତି । ତାଙ୍କ ଭୋଗ ସେଇପରି ବଢ଼ା ହୋଇ ରହିଛି । ଏଣେ ଲକ୍ଷ୍ମୀଦେବୀ ମଧ୍ୟ ଦେଖିଲେ, ଭଗବାନ ଶ୍ରୀବିଷ୍ଣୁ ମଧ୍ୟ ଶିବଲୋକକୁ ପଡ଼ି ବନ୍ଦକଲା ଦିନ ଠାରୁ ନିରାହାରରେ ରହି ଧ୍ୟାନଗ୍ରସ୍ତ ଅଛନ୍ତି । ପତିଦ୍ୱୟ ନିରାହାରରେ ଥିବା ହେତୁ ପତ୍ନୀ ଲକ୍ଷ୍ମୀ ଓ ପାର୍ବତୀ ବି ଆହାର କରି ନ ପାରି ଦୁଃଖୀ ହେଲେ ।

ଶେଷରେ ମହାଲକ୍ଷ୍ମୀ ଶ୍ରୀବିଷ୍ଣୁଙ୍କୁ ପଚାରି ଯେତେବେଳେ ଜାଣିଲେ ଯେ ଶିବ ହେଉଛନ୍ତି ତାଙ୍କ ପତି ବିଷ୍ଣୁଙ୍କର ଇଷ୍ଟଦେବ ଓ ଶ୍ରୀବିଷ୍ଣୁ ଶିବ ଦର୍ଶନ ବିନା ଅନ୍ନ ଗ୍ରହଣ କରିବେ ନାହିଁ, ସେ ଅତ୍ୟନ୍ତ ବ୍ୟଥିତା ହେଲେ । ପତିଙ୍କ ଇଷ୍ଟଦେବ ଓ ତାଙ୍କ ପତ୍ନୀ ପାର୍ବତୀଙ୍କୁ କଷ୍ଟ ପହଞ୍ଚାଇଥିବା ହେତୁ ନିଜକୁ ଧିକ୍କାର କଲେ ଓ ଶ୍ରୀବିଷ୍ଣୁଙ୍କ ସହ ଶିବ ଦର୍ଶନକୁ ଯାଇ କ୍ଷମାଭିକ୍ଷା କରିବେ ବୋଲି ବାହାରିଲେ ।

ଏ ପାଖରେ ଶ୍ରୀବିଷ୍ଣୁ ଓ ମହାଲକ୍ଷ୍ମୀ ଗରୁଡ଼ ପୃଷ୍ଠରେ ବସି ଶିବପାର୍ବତୀଙ୍କ ଦର୍ଶନ ପାଇଁ ଆସୁଥିବା ଦେଖି ସେପାଖରୁ ଶିବ, ପାର୍ବତୀ ବି ଶ୍ରୀବିଷ୍ଣୁଙ୍କ ଦର୍ଶନ ପାଇଁ ବୃଷଭ ପୃଷ୍ଠରେ ବିଜେ କରିଆସୁଥା'ନ୍ତି । ସେତେବେଳେ ମା'ପାର୍ବତୀ ଶିବଙ୍କର ଇଷ୍ଟଦେବ ଯେ ଶ୍ରୀବିଷ୍ଣୁ, ତେଣୁ ତାଙ୍କ ଦର୍ଶନ ନ ପାଇ ସେ ଅନାହାରରେ ଅଛନ୍ତି, ଏକଥା ଜାଣିଯାଇଥା'ନ୍ତି ଓ ଇଷ୍ଟଙ୍କ ପତ୍ନୀ ଲକ୍ଷ୍ମୀଙ୍କ ସହ କଳି କରିଥିବାରୁ ନିଜକୁ ଦୋଷୀ ମଣୁଥାଆନ୍ତି । ମଝିରେ ପଡ଼ିଲା ଏକ ବଡ଼ ନାଳ । ନାଳ ଏ ପାଖରେ ଗରୁଡ଼ରୁ ଓହ୍ଲାଇ ଆର ପାଖରେ ଶିବ-ପାର୍ବତୀଙ୍କୁ ଦେଖି ଧାଇଁଲେ ଲକ୍ଷ୍ମୀ-

ନାରାୟଣ । ଆର ପାଖୁ ବୃଷଭ ବାହନ ତ୍ୟାଗକରି ଦଉଡ଼ିଲେ ଶିବ-ପାର୍ବତୀ । ନାରାୟଣ ଡେଇଁ ଡେଇଁ ନାଳ ସେପାଖକୁ ଯାଇ ଶିବଙ୍କୁ ଆଲିଙ୍ଗନ କରି ଏକ ହୋଇଗଲେ । ଏଣେ ନାଳ ମଝିରେ ଭେଟ ପଡ଼ିଲେ ଲକ୍ଷ୍ମୀ ଓ ପାର୍ବତୀ । ପରସ୍ପରକୁ ମୁଣ୍ଡିଆ ମାରିବାକୁ ଯାଇ ଉଭୟେ ଉଭୟଙ୍କ ହାତକୁ ଧରି ପକାଇଲେ । ହେଲା, ଅପୂର୍ବ କଥା ! ଦୁଇ ଦେବୀଙ୍କର ହାତକୁ ହାତ ଛନ୍ଦା ହୋଇ ପରସ୍ପରକୁ କ୍ଷମାଭିକ୍ଷା କରନ୍ତେ, ଛନ୍ଦା କରପଦ୍ମରୁ ଜାତ ହେଲା ଏକ ଅପୂର୍ବ ଶସ୍ୟକେଣ୍ଡା ।

ଦୁଇ ମହାଦେବୀଙ୍କ ଆଖିରୁ ସୁଖର ଅଶ୍ରୁ ଓ ତା' ସହ କଜଳର ତେଲ ମିଶି ଝରିପଡୁଥାଏ ସେଇ ନାଳରେ । ଏଇ ସମୟରେ ଉଭୟ ଦେବୀଙ୍କ ଶାଶୂ ଶଶୁର ଆଦିଅନାଦି ଆବିର୍ଭୂତ ହୋଇ ଉଭୟଙ୍କୁ ପ୍ରଶଂସା କରି କହିଲେ, "ଧନ୍ୟ ଧନ୍ୟ !" ଆଦିଅନାଦି କହିଲେ, "ଆମେ ଧନ୍ୟଧନ୍ୟ କହିଥିବାରୁ ତୁମ ଦୁହିଁଙ୍କ କରପଦ୍ମରୁ ଜାତ ଏହି ଶସ୍ୟର ନାମ 'ଧାନ୍ୟ' ବା ଧାନ ନାମରେ ପରିଚିତ ହୋଇ ଶ୍ରେଷ୍ଠ ଶସ୍ୟ ଭାବେ ପ୍ରାଣୀଙ୍କ ପୋଷଣ କରିବ ଆଉ ସୁଖର ତୈଳାକ୍ତ ଅଶ୍ରୁମିଶ୍ରିତ ଏଇ ନାଳ 'ସୁଖତେଲ' ନଦୀ ଭାବେ ବିଖ୍ୟାତ ହେବ । ଏବେ ତୁମେ ତୁମ ସ୍ୱାମୀଙ୍କ ଆଡ଼କୁ ଦେଖ ।" ସେତେବେଳକୁ ଶିବ, ବିଷ୍ଣୁ ମିଶି ଏକ ଅଙ୍ଗ ହୋଇଯା'ନ୍ତି । ମିଶ୍ରିତ ବିଗ୍ରହ ପାର୍ବତୀଙ୍କୁ ବିଷ୍ଣୁ ପରି ଓ ଲକ୍ଷ୍ମୀଙ୍କୁ ଶିବ ପରି ଦେଖାଯାଉଥା'ନ୍ତି । ଅନାଦି କହିଲେ, "ଶିବ-ବିଷ୍ଣୁ ଏକ ଅଙ୍ଗ । ବୃଥାରେ ସିନା ଲୋକେ ଭେଦ କରିଥାଆନ୍ତି । ଆଜିଠୁଁ ଏ ଦୁହେଁ ଏଠାରେ 'ଶ୍ରୀହରିଶଙ୍କର' ଭାବେ ପୂଜା ପାଇବେ । ଏଠାକୁ ଗଙ୍ଗା ଆସିବେ, ସବୁ ଦେବତା ଆସିବେ । ଯେ ହେବ ମହାନ୍ ତୀର୍ଥ ! ତୁମେ ଦୁହେଁ ଅନ୍ନପୂର୍ଣ୍ଣା । ଯାଅ, ଏ ନୂଆ ଧାନରେ ଭୋଗ ପ୍ରସ୍ତୁତ କର । ସବୁ ଦେବତା, ଋଷି, ଚରାଚରକୁ ନେଇ ଆମେ ଏଠାରେ 'ନବାନ୍ନ ଭକ୍ଷଣ' ଉତ୍ସବ ପାଳିବୁ । ଯିଏ ଏଭଳି ନବାନ୍ନ ଭକ୍ଷଣ ଉତ୍ସବ ପାଳିବ ସେ ଅନ୍ନବାଧା ପାଇବ ନାହିଁ । ସବୁ ଦେବତାଙ୍କ ଆଶୀର୍ବାଦ ଲାଭ କରିବ ।"

ଅତଃପର ସବୁ ଦେବଗଣ, ଋଷି, ମୁନି, ସିଦ୍ଧ ସାଧକ ଠୁଳ ହେଲେ ଗନ୍ଧମାର୍ଦ୍ଦନ ପର୍ବତ ନିକଟରେ । ଅନାଦିଙ୍କ ଆଦେଶରେ ସେମାନେ ଶିବ-ବିଷ୍ଣୁଙ୍କ ଏକାଙ୍ଗ ରୂପକୁ ପୂଜା କଲେ ଓ ନାଁ ଦେଲେ 'ଶ୍ରୀହରିଶଙ୍କର' । ଲକ୍ଷ୍ମୀ-ପାର୍ବତୀଙ୍କ ଦ୍ୱାରା ପ୍ରସ୍ତୁତ 'ନବାନ୍ନ'କୁ ଭୋଗ ଲଗାଇ ପ୍ରସାଦ ଭାବରେ ସମସ୍ତେ ମହାସମାରୋହରେ ଖାଇ 'ନୂଆଖାଇ' ପର୍ବ ପାଳିଲେ ଓ ପରସ୍ପର ମନର ରାଗରୋଷ ଭୁଲି ଜ୍ୟେଷ୍ଠ କନିଷ୍ଠ କ୍ରମରେ ଅଭିବାଦନ କରି ନାଚି ଗାଇ ପାଳିଲେ ନୂଆଖାଇ ଭେଟ୍ ଉତ୍ସବ ।

ଆଜି 'ଶ୍ରୀହରିଶଙ୍କର' ମହାନ୍ ତୀର୍ଥ ଭାବେ ବିଦ୍ୟମାନ ଅଛି । ଆଜି ବି ଏ ଅଞ୍ଚଳର ଏହା ପ୍ରଧାନ ପର୍ବ । ନବାନ୍ନ ଭକ୍ଷଣ ଉତ୍ସବ ବା ନୂଆଁଖାଇ ପର୍ବ । କ୍ରୋଧ, ମୋହଶୂନ୍ୟ ଶାନ୍ତି ଓ ସମୃଦ୍ଧିର ମହାନ୍ ତୀର୍ଥ ହରିଶଙ୍କରରେ ଗଙ୍ଗା ଆଦି ନଦୀ ବିଭିନ୍ନ ଧାର ନାମରେ ବହିଆସୁଛନ୍ତି ଗନ୍ଧମାର୍ଦ୍ଦନର ସୁଉଚ୍ଚ ଶିଖରରୁ । ତନ୍ମଧ୍ୟରେ ଭୀମଧାର, ଚାଳଧାର, ଗୁପ୍ତଗଙ୍ଗା, ଗୋମୁଖୀ ଗଙ୍ଗାଧାର ଆଦି ପ୍ରଧାନ ।

ଗୋମୁଖୀ ଗଙ୍ଗାଧାରରେ ସହସ୍ର ସହସ୍ର ଲୋକ ପିତୃପୁରୁଷଙ୍କ ଅସ୍ଥି ବିସର୍ଜନ କଲେ ମୋକ୍ଷ ମିଳେ ବୋଲି ବିଶ୍ୱାସ କରନ୍ତି । ମନେରାମ ଅରଣ୍ୟ, ସୁଦୃଶ୍ୟ ଜଳପ୍ରପାତ, ସଦା ଫଳଶୋଭିତ ବନାନୀରେ ଅସଂଖ୍ୟ ଝର, ପୁଣ୍ୟୋତୟା ସୁଖତେଲ ନଦୀ, ଅସଂଖ୍ୟ ଔଷଧୀୟ ଗୁଳ୍ମଭରା ଭେଷଜ ଉଦ୍ୟାନ ଏବଂ ବନ୍ୟପ୍ରାଣୀ ବିହାର ଏହାର ପର୍ଯ୍ୟଟକମାନଙ୍କୁ ଆକର୍ଷିତ କରିଆସୁଅଛି । ଏତଦ୍‌ବ୍ୟତୀତ ଏହାର ପ୍ରାଚୀନ ଐତିହ୍ୟ, ହୁଏନ୍‌ସାଂଙ୍କ

ବିବରଣୀରେ 'ପଲିମଲ କିଲି' ବା ପରିମଳଗିରି ନାମରେ ରହିଛି । ନାଗାର୍ଜୁନଙ୍କ ବୌଦ୍ଧବିହାର, ରାମଚନ୍ଦ୍ର, ପଞ୍ଚପାଣ୍ଡବ, ବଳରାମ, ଶ୍ରୀକୃଷ୍ଣଙ୍କର ତୀର୍ଥାଟନର ସ୍ମାରକୀ,ଶୁକ, ବଶିଷ୍ଠ, ଋଷଭନାଥଙ୍କ ତପସ୍ୟାସ୍ଥଳୀ ଓ ସର୍ବୋପରି ପଦ୍ମପୁରାଣୋକ୍ତ ମୟ ଦୈତ୍ୟ ପଥରଗଡ଼ ଆଦି ପର୍ଯ୍ୟଟକଙ୍କୁ ଆକର୍ଷିତ କରେ । ପାହାଡ଼ର ଅପରପାର୍ଶ୍ୱସ୍ଥ ଶ୍ରୀନୃସିଂହନାଥ ତୀର୍ଥ ଯମଜ ତୀର୍ଥ ଭାବେ ପ୍ରଖ୍ୟାତ ।

*ବରପାଲିପଡ଼ା, ବଲାଙ୍ଗିର*

---

# ଖଟା କମଳାର ମିଠା

ଅନୁବାଦ : **ଇଂ ରଘୁନାଥ ପ୍ରସାଦ ଦାସ**



ସେ ପ୍ରାୟତଃ ଜଣେ ବୁଢ଼ୀଠାରୁ କମଳା କିଣନ୍ତି । ସବୁବେଳେ ଓଜନ କରି କମଳା କିଣି ସାରି ପଇସା ଦେଇ ବ୍ୟାଗ୍ ଭିତରେ ରଖନ୍ତି, ଆଉ ବ୍ୟାଗ୍‌ରୁ ଗୋଟିଏ କମଳା ବାହାର କରି ଛଡ଼ାନ୍ତି । ପାଟିରେ ଖଣ୍ଡେ ଦେଇ କହନ୍ତି, "ଇଏ ତ ଖଟା !" ତା'ପରେ ସେଇ ବୁଢ଼ୀକୁ ଖଣ୍ଡେ ଦେଇ ଚାଖିବାକୁ କହନ୍ତି ।

ବୁଢ଼ୀଟି ସେଇ କମଳାଖଣ୍ଡ ପାଟିରେ ଦେଇ କହେ– "କାହିଁ ଇଏ ତ ମିଠା !" ସେତେବେଳକୁ ସେଇ ଲୋକଟି ତାଙ୍କ ବ୍ୟାଗ୍ ଧରି ଚାଲିଯାଇଥାନ୍ତି ।

ତାଙ୍କ ସ୍ତ୍ରୀ ତାଙ୍କ ସାଙ୍ଗରେ ଥାଇ ଏକଥା ଲକ୍ଷ୍ୟ କରନ୍ତି । ଦିନେ ସେ ତାଙ୍କର ସ୍ୱାମୀଙ୍କୁ ପଚାରିଲେ, "କମଳାତକ ତ ସବୁବେଳେ ମିଠା, ତମେ ସେ ବୁଢ଼ୀ ସାଙ୍ଗରେ କାହିଁକି ସବୁବେଳେ ସେମିତି ହୁଅ ?"

ସ୍ୱାମୀ ହସି ହସି କହିଲେ, "ସେଇ ବୁଢ଼ୀମାଆଟି ମିଠା କମଳା ବିକେ, କିନ୍ତୁ କେବେ ଖାଏନି । ଏଇ ବାଟରେ ମୁଁ ତାକୁ ଟିକିଏ ଖାଇବାକୁ ଦିଏ । ଏଥିରେ ତା'ର ପଇସା ଖର୍ଚ୍ଚ ହୁଏନି । କଥାଟା ଏଇଆ ।"

ବୁଢ଼ୀଟି ପାଖରେ ଜଣେ ପରିବାବିକାଳି ବସି ସବୁଦିନ ଏଇ କଥା ଦେଖୁଥାଏ । ଦିନେ ପରିବା ବିକାଳିଟି ସେଇ ବୁଢ଼ୀ ଲୋକୁ କହିଲା, "ସବୁଥର ସେଇ ଲୋକଟି ଏମିତି କଥା କହେ, ଆଉ ତମେ ତାକୁ ଟିକିଏ ଅଧିକ ଓଜନର ଦିଅ ବୋଲି ମୁଁ ଦେଖେ ।"

ହସି ହସି ବୁଢ଼ୀଟି କହିଲା, "ମୁଁ ଜାଣେ ସେ ମୋତେ ଖୁଆଇବା ପାଇଁ କମଳାକୁ ଖଟା ବୋଲି କହେ, କିନ୍ତୁ ମୁଁ ସେ କଥା ବୁଝିପାରୁଛି ବୋଲି ସେ ଜାଣେନା । ମୁଁ ତାକୁ ଅଧିକ ଓଜନର ଦିଏନା; କିନ୍ତୁ ତା'ର ମୋ ପ୍ରତି ସ୍ନେହ ତରାଜୁକୁ ଗୋଟେ ପଟ ତଳକୁ କରିଦିଏ ସବୁଥର ।"

—ଜୀବନର ଖୁସି ଏଇଭଳି ଛୋଟ ଛୋଟ କଥାରେ ଥାଏ, ଯେଉଁଥିରେ ସ୍ନେହ ଆଉ ଶ୍ରଦ୍ଧା ଭରପୂର ହୋଇ ଥାଏ ପରସ୍ପର ପ୍ରତି । ଅନ୍ୟକୁ କିଛି ଦେବାରେ ହିଁ ଏହା ଥାଏ, ଟଙ୍କାରେ ନୁହେଁ ।

ଆସ ଆମେ ଅନ୍ୟକୁ ଖୁସି ଦେଇ ଖୁସି ହେବା ।

*ଦେଉଳସାହି, କଟକ- ୮*






# ବିପଦ ! ଟବାକୋଠାରୁ ଦୂରେଇଯାଅ

ଡକ୍ଟର ମୁରାରି ମୋହନ ଦାଶ

ଭାରତ ସରକାରଙ୍କ ସ୍ୱାସ୍ଥ୍ୟ ମନ୍ତ୍ରଣାଳୟ ଏକ ବିବରଣୀରେ କହିଛନ୍ତି ଯେ ଭାରତରେ ମୁଖଗହ୍ୱର କ୍ୟାନସର ରୋଗୀଙ୍କ ସଂଖ୍ୟା ପୃଥିବୀର ଅନ୍ୟ ଦେଶ ତୁଳନାରେ ଅଧିକ । ପ୍ରତିବର୍ଷ ୭୫-୮୦ ହଜାର ନୂଆ ରୋଗୀ ବାହାରୁଛନ୍ତି । ଏହା କେବଳ ଟବାକୋକୁ କଳରେ ଜାକିବା ଯୋଗୁଁ ହୋଇଥାଏ । ଟବାକୋ ଖାଇବାର ଅର୍ଥ ମୃତ୍ୟୁକୁ ନିମନ୍ତ୍ରଣ କରିବା । ଧୂମପାନ ସହିତ ଟବାକୋ କଳରେ ଜାକିବାକୁ ତୁଳନା କଲେ ଦ୍ୱିତୀୟଟି ବହୁ ଗୁଣରେ ମାରାତ୍ମକ ।

ଅନ୍ତଃରାଷ୍ଟ୍ରୀୟ କ୍ୟାନ୍‌ସର ଗବେଷଣା କାର୍ଯ୍ୟାଳୟ ଅନୁସାରେ ଟବାକୋରେ ୨୮ ପ୍ରକାରର ବିଷାକ୍ତ କ୍ୟାନ୍‌ସର ସୃଷ୍ଟିକାରୀ ପଦାର୍ଥ ରହିଛି । ସେଥିମଧ୍ୟରୁ ସବୁଠାରୁ ମାରାତ୍ମକ ହେଲା 'ନାଇଟ୍ରସ୍‌ଆମାଇନ୍' । ଟବାକୋରେ କେତେ ପରିମାଣର ଏ ପଦାର୍ଥ ରହିଛି, ତା' ଉପରେ କ୍ୟାନସର ହେବାର ଆଶଙ୍କା ନିର୍ଭର କରେ । ଏହା ବ୍ୟତୀତ ଟବାକୋ ପାଇଁ ବ୍ୟବହୃତ ସାରରେ ପୋଲୋନିୟମ୍-୨୧୦ ନାମକ ଏକ ରେଡିଓ-ଆକ୍ଟିଭ୍ ପଦାର୍ଥ ଥାଏ । ସିଗାରେଟ୍ ତୁଳନାରେ ଟବାକୋରେ ନିକୋଟିନ୍‌ର ପରିମାଣ ଅଧିକ ଥାଏ ।

ଟବାକୋକୁ ତିରିଶି ମିନିଟ୍ ପାଟିରେ ଜାକିଲେ ଯେତେ ପରିମାଣର ନିକୋଟିନ ସେଥିରୁ ଉନ୍ମୁକ୍ତ ହୁଏ, ତାହା ତିନିଟି ସିଗାରେଟ୍ ପିଇବା ସହିତ ସମାନ । ପାଟିର ଅନ୍ତରାଚ୍ଛାଦନ ଦେଇ ନିକୋଟିନ୍ ଅବଶୋଷିତ ହୋଇ ରକ୍ତ ଓ ପରେ ପରେ ମସ୍ତିଷ୍କରେ ପହଞ୍ଚେ । ପାଟିରୁ ଟବାକୋ ବାହାର କରିଦେଲେ ମଧ୍ୟ ଯେତେ ପରିମାଣର ନିକୋଟିନ୍ ଅନ୍ତରାଚ୍ଛାଦନ ଦ୍ୱାରା ଅବଶୋଷିତ ହୋଇଥାଏ, ତାହା ବହୁସମୟ ଧରି ରକ୍ତକୁ ନିକୋଟିନ୍ ଯୋଗାଉଥାଏ । ନିକୋଟିନ୍ ରକ୍ତରେ ମଧ୍ୟ ବହୁ ସମୟ ଧରି ଉପସ୍ଥିତ ରହିପାରେ । ପରୀକ୍ଷାରୁ ଜଣାଯାଇଛି ଯେ ଧୂମହୀନ ଟବାକୋ ମୁଖଗହ୍ୱର, ଗ୍ରାସନଳୀ ଓ ଅଗ୍ନାଶୟ କ୍ୟାନ୍‌ସର ସୃଷ୍ଟି କରିପାରେ । ଏହାମଧ୍ୟ ହୃଦ୍‌ରୋଗ, ମାଢ଼ିରୋଗ ଓ ଲ୍ୟୁକୋପ୍ଲାକିଆ (କ୍ୟାନସରର ପୂର୍ବାବସ୍ଥା) ସୃଷ୍ଟି କରିଥାଏ ।

ଭାରତର ପୂର୍ବାଞ୍ଚଳ ଓ ଉତ୍ତର-ପୂର୍ବାଞ୍ଚଳ ରାଜ୍ୟମାନଙ୍କରେ ମହିଳାଙ୍କ ସମେତ ବହୁ ଲୋକ ଟବାକୋ ପ୍ରଚୁର ବ୍ୟବହାର କରନ୍ତି । ସେଥିପାଇଁ ମୁଖଗହ୍ୱର କ୍ୟାନ୍‌ସର ହାର ଭାରତରେ ଅଧିକ । କ୍ୟାନ୍‌ସର ଆକ୍ରାନ୍ତଙ୍କ ମଧ୍ୟରୁ ୫୦ ପ୍ରତିଶତ ହେଉଛନ୍ତି ମୁଖଗହ୍ୱର କ୍ୟାନସର ରୋଗୀ । ଟବାକୋକୁ ବିଭିନ୍ନ ଅଞ୍ଚଳର ଲୋକେ ଭିନ୍ନ ଭିନ୍ନ ପ୍ରକାର ବ୍ୟବହାର କରନ୍ତି । ଟବାକୋ ପତ୍ରକୁ ଗୁଣ୍ଡକରି ଖଇନି ପ୍ରସ୍ତୁତ କରାଯାଏ । ଗୁଆ ଓ ଟବାକୋ ସହିତ କେତେକ ସୁଗନ୍ଧ ଦ୍ରବ୍ୟ ମିଶାଇ ଗୁଟ୍‌କା ପ୍ରସ୍ତୁତ ହୁଏ । ପାନପତ୍ର ସହିତ ଚୂନ, ଖଇର, ଗୁଆ ଓ ଟବାକୋ ମିଶାଇ କଡ଼ାପାନ ଭଙ୍ଗାଯାଇଥାଏ । ପାନ ମସଲା ତିଆରି କରନ୍ତି ଗୁଆ, ଚୂନ, ଖଇର, ଲୁଣ ଓ ରାଗ ମିଶାଇ । ମାଓ୍ୱା ମଧ୍ୟ ଗୁଆ, ଚୂନ ଓ ସୁବାସିତ ଟବାକୋରୁ ପ୍ରସ୍ତୁତ ହୁଏ । ଗୁଡ଼ାଖୁ ଗୁଡ଼-ଟବାକୋ

ମିଶ୍ରଣରୁ ତିଆରି ହୁଏ । ନାଶ ପ୍ରସ୍ତୁତ ହୁଏ ଟବାକୋ ପାଉଡର ଓ ସୁବାସିତ ରସାୟନରୁ । ଖଇନି, ପାନମସଲା, ମାଓ୍ୱା ଓ ଗୁଟ୍‌କା ପାଟିରେ ହେଉଥିବା କ୍ୟାନସର ପାଇଁ ଦାୟୀ । ଗୁଡ଼ାଖୁ ଯୋଗୁଁ ମାଢ଼ିରେ କ୍ୟାନସର ହୁଏ । ନାଶ ଶୁଙ୍ଘିଲେ ନାକ ଓ ପାଟି ହାଡ଼ରେ କ୍ୟାନ୍‌ସର ହୁଏ । ଉପରବର୍ଣ୍ଣିତ ସବୁ ଧୂମବିହୀନ ଟବାକୋରେ ପ୍ରସ୍ତୁତ ଦ୍ରବ୍ୟକୁ ଲୋକମାନେ ଯେପରି ବ୍ୟବହାର ନ କରିବେ, ସେଥିପାଇଁ ଜନସଚେତନତା ସୃଷ୍ଟି କରିବା ଆବଶ୍ୟକ ।

ବର୍ତ୍ତମାନ ଦିଲ୍ଲୀ ସରକାର ଟବାକୋ କ୍ରୟବିକ୍ରୟ, ମହଜୁଦ୍ ରଖିବା ଓ ସେଥିରେ ବିଭିନ୍ନ ପ୍ରକାର ଦ୍ରବ୍ୟ ପ୍ରସ୍ତୁତ କରିବାକୁ ନିଷିଦ୍ଧ ଘୋଷଣା କରିଛନ୍ତି । ସମ୍ଭବତଃ ଏହା ଟବାକୋ ବ୍ୟବହାର ବିରୋଧରେ ଦେଶରେ ପ୍ରଥମ ପଦକ୍ଷେପ । ଓଡ଼ିଶା ସରକାର ମଧ୍ୟ ବହୁ ଆଗରୁ ଗୁଟ୍‌କା ଉପରେ କଟକଣା ଜାରି କରିଥିଲେ ।

ଟବାକୋ ଠାରୁ ଦୂରେଇ ରହିବା ବୁଦ୍ଧିମାନର କାର୍ଯ୍ୟ । ସିଗାରେଟ୍ ପିଉଥିବା ବ୍ୟକ୍ତି କ୍ଷତିଗ୍ରସ୍ତ ହେଉଥିବାବେଳେ ତା'ର ପରିବାରର ସଦସ୍ୟମାନେ ମଧ୍ୟ କ୍ଷତିଗ୍ରସ୍ତ ହୋଇଥା'ନ୍ତି । ଏପରିକି ସିଗାରେଟ୍ ପିଉଥିବା ଲୋକର ଲୁଗାପଟାକୁ ଶୁଙ୍ଘିଲେ ମଧ୍ୟ ବିପଦର ଆଶଙ୍କା ଥାଏ । ଏଥିରୁ ଜଣାଯାଏ ଟବାକୋ କେତେ ମାରାତ୍ମକ । ସାଧୁ ! ସାବଧାନ ।

*ଜି/ଏଲ୍-୧, ଭି.ଏସ୍.ଏସ୍.ନଗର, ଭୁବନେଶ୍ୱର-୭୫୧୦୦୭*

## ଶରତ ଧନ୍ଦା

ଶ୍ରୀ ମାଧବାନନ୍ଦ ପଣ୍ଡା

ସରସ ଶରତେ ଶଶି ହସୁଅଛି ଆକାଶେ
ତଡ଼ାଗେ କମଳ, କୁମୁଦଙ୍କ ଶୋଭା ବିକାଶେ ।
କରିବାକୁ ଦୁଷ୍ଟ ଦନୁଜର ଦର୍ପ ହରଣ
ହିମାଦ୍ରି ତନୟା ଦୁର୍ଗା ରୂପ କରି ଧାରଣ ।
ବାମ ହସ୍ତେ ଖଡ୍ଗ ଦକ୍ଷ ହସ୍ତେ ଧରି ତ୍ରିଶୂଳ
କୁପଥଗାମୀ ଦାନବେ କରିଲେ ନିର୍ମୂଳ ।
କି ବିକଟାଳ କେଶରୀ ମହିଷାରେ ମର୍ଦ୍ଦନ
ଆଁ କରି ଭୟଙ୍କର କରୁଅଛି ଗର୍ଜନ ।
ଡଙ୍ଗର ବନ ପଠାରେ କାଶତଣ୍ଡି ଶୋଭନ
ରିକ୍ତ ଜଳଦ ଭାରରୁ ଆକାଶର ଅଙ୍ଗନ ।
ବିପୁଳ ସୌନ୍ଦର୍ଯ୍ୟମୟୀ, ଶୋଭାମୟୀ ଶରତ
ପୂଜା, ପାର୍ବଣ ପଙ୍ଗତେ ପୂରିତ ଏ ମରତ ।

ଶରତ ବର୍ଣ୍ଣନା ସାଥେ ଏକ ଉକ୍ତି ରହିଛି
ଖୋଜି ପାଇବ ବୋଲି ମୁଁ ଦୃଢ଼ ଆଶା କରିଛି ।
ସେ ଲେଖକଙ୍କ ନାମକୁ ଯିଏ କହିପାରିବ
'ସଂସାର' ପକ୍ଷରୁ ସିଏ ଧନ୍ୟବାଦ ପାଇବ ।

*୩୩- ନୟନ ବିହାର, କସୋଟୀ, ପାଣ୍ଡିରୀ, କେନ୍ଦ୍ରାପଡ଼ା-୭୫୪୨୫୦*

ସଂଗ୍ରହ :
**ଶ୍ରୀ ପ୍ରତାପ ଚନ୍ଦ୍ର ଭଞ୍ଜ**



ଏଣ୍ଡୁଅ କ୍ୟାଲସିୟମ୍ ଭରଣା ପାଇଁ ନିଜ ଲାଞ୍ଜକୁ ଖାଇଥାଏ ।



ଜିଆମାନଙ୍କର ୫ଟି ହୃଦୟ ଥାଏ ।



ସମୁଦ୍ର କଇଁଛ କେବେ ବି ତା'ର ମା'କୁ ଭେଟିପାରେ ନାହିଁ ।

# ମିଟୁ ଓ ପଣକିଆ

ରାଜଲକ୍ଷ୍ମୀ ତ୍ରିପାଠୀ

ଦୀପଂ ଜ୍ୟୋତି ପରଂବ୍ରହ୍ମ
ଦୀପଂଜ୍ୟୋତି ଜନାର୍ଦ୍ଦନଂ
ଦୀପଂ ଜ୍ୟୋତି ହରେତ୍ ପାପଃ
ସନ୍ଧ୍ୟାଧୂପଂ ନମସ୍ତୁତେ........

ଏତିକି ଧୈର୍ଯ୍ୟର ସହିତ ମିଟୁ ଗାଉ ଗାଉ ତା' ନାନୀକି ହଲେଇଦେଇ କହିଲା, "ନାନୀ! ତୁ ଜାଣିଛୁ, ଏଇନା ନୁହେଁ.... ବାପା ବୋଉ ହାତରେ ଗୋଟିଏ ପୁଡ଼ିଆ ଦେଇଦେଲେ । ମୁଁ ଦୌଡ଼ି ଆସିବାରୁ ବୋଉ ଲୁଚାଇଦେଇ କହିଲା, ''ତୁ ଯା ପ୍ରାର୍ଥନା କର ନାନୀ ପାଖରେ ବସି ।''

"ମୁଁ କରିବିନି ଯା.....ବୋଉ ତ ସବୁ ଜିନିଷ ଲୁଚାଇ କରି ଖାଇଦେଉଛି । ବାପା ବୋଉକୁ ଖାଲି ସବୁ ଜିନିଷ ଦେଉଛନ୍ତି । ମୋତେ କାହିଁ ଦେବେନି ?" ବଡ଼ ପାଟି କରି ତା' ନାନୀକୁ ବଡ଼ ବଡ଼ ଆଖିରେ ଚାହିଁଲା । ନାନୀ ରାଗିକରି ସିଧା ବୋଉ ପାଖକୁ ଯାଇ ଅଭିଯୋଗ ଜଣାଇଲା, "ତୁ କାହିଁକି ମୋତେ ଯା' ପାଖରେ ବସି ପ୍ରାର୍ଥନା କରିବାକୁ କହୁଛୁ? ସେ ମୂର୍ଖ ଜମା ଶୁଣୁନି । ଖାଲି କହୁଛି ବାପା ତୋତେ କ'ଣ ପୁଡ଼ିଆ ଦେଲେ, ଆଉ ଆମେ ଶୋଇବା ପରେ ତୁ ଖାଇବୁ ବୋଲି ।"

ବୋଉ ହସ ଆଉ ସମ୍ଭାଳି ନ ପାରି ହସି ହସି କହିଲେ, "ଭଲ ହେଲା । ମୁଁ ଖାଇବି । ମିଟୁ.....ମିଟୁ ଜଲଦି ଆ ବାପା କହିଛନ୍ତି '୨ରୁ ୨୫କ' ପଣକିଆ ଦଶଥର ଲେଖିବୁ ଓ ପାଞ୍ଚଥର ଡାକିବୁ ।" ଏତିକି ନ ଶୁଣି ଭେଁ ରଡ଼ି ସହିତ ଲୁହର ବନ୍ୟା ଛୁଟାଇ ଗର୍ଜନ କରି ବୋଉ କାନିରେ ଝୁଲି କହିଲା, "ଆଗ କହ ତୁ କାନିରେ କ'ଣ ଲୁଚାଇଦେଲୁ ?" ବୋଉ ରାଗରେ ପାଟି କରିବାରୁ ଏକାଥରେ ଚୁପ୍ କରି ବସିଗଲା ମିଟୁ । ଖାତାକଲମ ଧରି ଖାଲି ରାଗିକରି ଜଂଘ ଉପରେ ଖାତା ପକେଇ ଗାରେଇ ଚାଲିଲା ଏଣୁତେଣୁ ଗାର । ପୁଣି ବୋଉଙ୍କ ତାଗିଦ୍, "ବାପା ଆସୁଥିବେ ମିଟୁ, କେତେଥର ଲେଖିଲୁଣି ?

"ମୁଁ ଲେଖିବିନି, ତୁ ମୋତେ ବାଡ଼େଇଲୁ କାହିଁକି ? ପୁଣି ଲୁଚିକିରି ଖାଉଛୁ ।"

ବୋଉ କାମ ଛାଡ଼ି ଆସିଲେ, "ବାପାରେ, ଧନରେ, ତୋତେ ମୁଁ କ'ଣ ନ ଦେଇ ଖାଇପାରିବି ? ତୁ ପରା ପାଠ ପଢ଼ି ବଡ଼ ହାକିମ ହେବୁ । ଲେଖେ– ମୁଁ ତୋତେ ଡାକିଦେଉଛି । ବହୁ କଷ୍ଟେମଷ୍ଟେ ୨ରୁ ୬କ ଯାଏଁ ପଣିକିଆ ସରିବା ପରେ ଗେହ୍ଲେଇହୋଇ ବୋଉ ପିଠିରେ ଲାଉ ହୋଇ କହିଲା– ବୋଉ ବାପା କ'ଣ ଦେଲେ ? ବୋଉ କହିଲେ, "ବହୁତ ଭଲ ଭଲ ଜିନିଷ ।"

"କାହିଁକି ? ତୁ କ'ଣ ପଣିକିଆ ଲେଖୁଛୁ କି ?"

"ତୋ ବାପାଙ୍କୁ ପଚାରେ ସେ ଆସିଲେଣି । ମୁଁ ଆଉ ପାରିବିନି ।'' ବାପାଙ୍କର ସ୍ୱର 'ମିଟୁ.... କେତେଥର ଲେଖାହେଲା ?'

–ଆଜ୍ଞା.... ଆଜ୍ଞା, ଥରେ ବି ହୋଇନି ।

—କାହିଁକି ? ହାଇ ଉପରେ ହାଇ ମାରି ଶେଷରେ ସେଦିନ ଶୋଇଯାଇଥିଲା ମିଟୁ । ତା'ପରଦିନ ଉଠି ମିଟୁକୁ ତା'ର ମା' ମନାକଲେ, "ଆଜି ସ୍କୁଲ ଯାଆନା । ମନ୍ଦିର ଯିବା ।" ସେହି ପୁଡ଼ିଆଟି ଖୋଲି ନୂଆ ଜାମା ପ୍ୟାଣ୍ଟ୍ ପିନ୍ଧାଇ, ଚନ୍ଦନ ଟୋପା ମାରି ବୋଉ ମନ୍ଦିର ନେଇଗଲେ ଓ ଘରକୁ ଆସି କହିଲେ, "ତୁ ପଣିକିଆ ଲେଖୁଥା । ମୁଁ ଖାଇବା ତିଆରି କରେ । ସମସ୍ତେ ବସି ଖାଇବ । ତୋ ସାଙ୍ଗକୁ ବି ଡାକିବୁ ।" ମିଟୁର ସଂଗେ ସଂଗେ ପ୍ରଶ୍ନ, "କାହିଁ, ଆଜି ପରା ତୁ କହିଲୁ ମୋ ଜନ୍ମଦିନ । ଆଜି କାହିଁକି ଲେଖିବି ? ସରସ୍ୱତୀ ପୂଜା, ଗଣେଶ ପୂଜାରେ ତ ଲେଖୁନି । ଆଜି ବି ଲେଖିବିନି ।"

ଭଲ ଦିନଟି ଥିବାରୁ ବାପାବୋଉ ଦୁହେଁ କେହି କିଛି ବାଧ ନ କରି କହିଲେ, "ହଉ ଯା ତୋ ସାଂଗ ରୋନିକୁ ଡାକି ଆଣିବୁ, ଖାଇବା ।" ବୋଉ ବହୁତ ମିଠା, ପିଠା ସଜାଡ଼ି ଦେଲେ । ମିଟୁ ଦୌଡ଼ିଗଲା ରୋନି ଘରକୁ । ମା' ଡାକିଛନ୍ତି, ଆସେ ଆଜି ମୋ ଜନ୍ମଦିନ ।" ରୋନି ହସିଲା ଓ କହିଲା, "ହଉ ମୁଁ ଯିବି ଯେ ଘଣ୍ଟାକ ପରେ ।"

ମିଟୁ ପ୍ରଶ୍ନ କଲା, "କାହିଁକି ?"

"ମୋ ବାପା ପଣିକିଆ ମୁଖସ୍ତ ନେବେ । ତୁ ଘୋଷି ସାରିଛୁ ?" ମିଟୁ ପଚାରିଲା ।

"ହଁ ସବୁଦିନ ବହୁତଥର ଲେଖେ ଓ ପଢ଼େ । ସେଥିପାଇଁ ମୋର ମନେରହେ । ତୁ ମୋତେ ପଚାରୁନୁ, ମୁଁ ସବୁ କହିଦେବି ।" ମିଟୁ ମୁହଁଟି ଗମ୍ଭୀର ହୋଇଗଲା । କହିଲା– "ହଉ ମୁଁ ଯାଉଛି, ତୁ ଆସିବୁ ।"

ଘରକୁ ଦୌଡ଼ିଆସି ସଂଗେ ସଂଗେ ଖାତାକଲମ କାଢ଼ି ପଣକିଆ ଲେଖିବାରେ ବ୍ୟସ୍ତ ରହିଲା । ହଠାତ୍ ବାପାଙ୍କ ନଜର ପଡ଼ିଗଲା । ସେ ଗୁଡ଼ାଏ ଲଲିପପ୍ ନେଇ ତା'ପାଖକୁ ଗଲେ, ଓ କହିଲେ ଥାଉ ଆଜି ପାଠପଢ଼ା ବନ୍ଦ । ମିଟୁ କହିଲା, "ନାଁ ବାପା, ପଣିକିଆ ଲେଖିବା ଓ କହିବା । ତା'ପରେ ଖାଇବା ।" ବାପାଙ୍କର ଆନନ୍ଦର ସୀମା ରହିଲା ନାହିଁ । ପୁଅର ଏ ପରିବର୍ତ୍ତନ ତା'ର ଭଲ ସାଂଗଠାରୁ ପାଇଥିବା ଜାଣି ଖୁସିରେ ଗଦ୍‌ଗଦ୍ ହୋଇ କହିଲେ, "ରୋନି ଓ ମିଟୁ ଆସନ୍ତୁ, ଆମେ ଏକାଠି ଖାଇବା ।" ପ୍ରକୃତରେ ସାଂଗମାନଙ୍କଠାରୁ ହିଁ ପିଲାମାନେ ଅଧିକ ଶିକ୍ଷା ପାଆନ୍ତି ବୋଲି ସମସ୍ତେ ଅନୁଭବ କଲେ ।

*ଏସ୍.ଆଇ.ପି କଲୋନି, କ୍ୱାର୍ଟର ନଂ- ଇ/୯, ବାରିପଦା, ଲକ୍ଷ୍ମୀପୁରୀ- ୭୫୭୧୦୭*

## କୌତୁକ ପ୍ରଶ୍ନ

୧ । କେଉଁ ପାଞ୍ଚ ଅକ୍ଷର ବିଶିଷ୍ଟ ଶବ୍ଦରୁ ତିନୋଟି ଅକ୍ଷର କାଢ଼ିନେଲେ ଆଉ ଚାରି ରହିବ ?

୨ । କେଉଁ ଲୋକ ସବୁବେଳେ ଉପରକୁ ଯାଉଥାଏ ଓ ତଳକୁ ଆସୁଥାଏ ?

୩ । ୪ଟି ୪କୁ ଗାଣିତିକ ସଂକେତ ଦେଇ ଏପରି ସଜାଇ ଲେଖ, ଯେପରି ତା'ର ମୂଲ୍ୟ ୪୮.୪ ହେବ ।

*(ଉତ୍ତର ୨୪ ପୃଷ୍ଠାରେ)*

# ସ୍ୱାଭିମାନୀ ବାଳକ

ଶ୍ରୀମତୀ ସୁଷମା ମିଶ୍ର



ଗ୍ରୀସ୍ ଦେଶରେ କିଲେନ୍‌ଥିସ୍ ନାମକ ଜଣେ ବାଳକ ଏଥେନ୍‌ସର ତତ୍ତ୍ୱବେତ୍ତା ଜୀନୋଙ୍କ ପାଠଶାଳାରେ ପଢୁଥିଲା । କିଲେନ୍‌ଥିସ୍ ବହୁତ ଗରିବ ଘରର ପିଲା ଥିଲା । ସ୍କୁଲ୍‌କୁ ପିନ୍ଧି ଯିବା ପାଇଁ ତା' ପାଖରେ ଆବଶ୍ୟକ ପୋଷାକ ନଥିଲା । କିନ୍ତୁ ସେ ନିୟମିତ ଭାବେ ପାଠଶାଳାର ଦେୟ ଭରଣା କରିଦେଉଥିଲା । ପାଠପଢ଼ାରେ ସେ ବହୁତ ମେଧାବୀ ଛାତ୍ର ଥିଲା । ତା' ଶ୍ରେଣୀର ସହପାଠୀମାନେ ତାକୁ ବହୁତ ଈର୍ଷା କରୁଥିଲେ ।

କିଲେନ୍‌ଥିସ୍ ପାଖରେ ଚିରା ପୋଷାକ ବ୍ୟତୀତ ଅନ୍ୟ କିଛି ନଥିଲେ ସୁଦ୍ଧା ସେ ନିୟମିତ ରୂପେ ପାଠଶାଳାର ଦେୟ ଦେଇପାରୁଥିବା ଦେଖି କେତେକଙ୍କ ମନରେ ସନ୍ଦେହ ହେଲା । ସେ ସନ୍ଦେହ ବହୁତ ନ୍ୟୂନସ୍ତରର ଥିଲା । ସେମାନେ ଭାବୁଥିଲେ କିଲେନ୍‌ଥିସ୍ ନିଶ୍ଚୟ ଚୋରି କରୁଛି । ଏପରି ଭାବନା ମନରେ ଆଣି ସେହି ପ୍ରତିଭାବାନ୍ ବାଳକକୁ ସେମାନେ ଚୋର ଆଖ୍ୟା ଦେଇ ପୋଲିସ୍‌ରେ ଧରାଇଦେଲେ ।

ଏକଥା ବିଚାରାଳୟକୁ ଗଲା । କିଲେନ୍‌ଥିସ୍ ନିର୍ଭୀକ ଭାବରେ ବିଚାରପତିଙ୍କ ନିକଟକୁ ଗଲା ଏବଂ କହିଲା, ''ମୁଁ ନିର୍ଦ୍ଦୋଷ, ବିନା ଅପରାଧରେ ମୋତେ ମିଛରେ ଚୋର ବୋଲି କୁହାଯାଇଛି । ମୋ କଥାକୁ ସତ ବୋଲି ପ୍ରମାଣିତ କରିବା ପାଇଁ ମୁଁ ଦୁଇଜଣ ସାକ୍ଷୀଙ୍କୁ ମୋ ସଙ୍ଗରେ ଆଣିଛି ।'' ଏକ ନମ୍ବର ସାକ୍ଷୀ ଭାବରେ ଜଣେ ମାଳୀ ଆସି ବିଚାରପତିଙ୍କୁ କହିଲା, ''ମହାଶୟ, ଏ ପିଲାଟି ପ୍ରତିଦିନ ମୋ ବଗିଚାକୁ ଆସି କୂଅରୁ ପାଣି କାଢ଼ି ମୋ ବଗିଚାରେ ପାଣିଦିଏ ।'' ଦୁଇ ନମ୍ବର ସାକ୍ଷୀ ଭାବରେ ଜଣେ ବୃଦ୍ଧା ସ୍ତ୍ରୀ ଲୋକ ଆସି କହିଲେ, ''ମହାଭାଗ, ଗହମ ପେଷିବା ପାଇଁ ମୋ ଘରେ କେହି ନାହାନ୍ତି । ଏ ପିଲାଟି ମୋ ଗହମ ପେଷିଦିଏ ଏବଂ ମୁଁ ତା'ର ଉଚିତ ପାରିଶ୍ରମିକ ଦିଏ । ତା'ପରେ ସେ ଚାଲିଯାଏ ।'' ଏଥିରୁ ବିଚାରପତି ମହୋଦୟ ହୃଦୟଙ୍ଗମ କଲେ, କିଲେନ୍‌ଥିସ୍ ପାଠ ପଢ଼ିବା ସମୟ ପରେ ମଧ୍ୟ ଶାରୀରିକ ପରିଶ୍ରମ କରି କିଛି ଅର୍ଥ ଉପାର୍ଜ୍ଜନ କରୁଛି, ଯାହା ଫଳରେ ନିଜେ ଚଳି, ନିୟମିତ ଭାବେ ପାଠଶାଳାର ଦେୟ ଦେଇପାରୁଛି । ବିଚାରପତି ସେହି ବାଳକ ଉପରେ ଖୁବ୍ ସନ୍ତୁଷ୍ଟ ହେଲେ । ସେ ପରିଶ୍ରମ ନକରି ଯେପରି ପାଠ ପଢିପାରିବ ସେଥିପାଇଁ ତାକୁ ଯଥାସମ୍ଭବ ସାହାଯ୍ୟ ଦେବାପାଇଁ ଇଚ୍ଛା ପ୍ରକାଶ କଲେ । କିନ୍ତୁ ସ୍ୱାଭିମାନୀ ବାଳକ କିଲେନ୍‌ଥିସ୍ ନମ୍ରତାର ସହିତ ତାହା ଗ୍ରହଣ କରିବା ପାଇଁ ମନାକଲା ଏବଂ କହିଲା, ''ନିଜେ ପରିଶ୍ରମ କରି ପାଠ ପଢ଼ିବା ମୋର ଉଦ୍ଦେଶ୍ୟ । ମୋ ବାପା ମା, ଏହି କଥା ମୋତେ କହିଛନ୍ତି ଯେ, କାହାଠାରୁ ଦାନ ନନେଇ ସ୍ୱାବଲମ୍ବୀ ହୋଇ ଉନ୍ନତି

କରିବୁ । ଏହି ସଂସ୍କାର ପରବର୍ତ୍ତୀ କାଳରେ ବ୍ୟକ୍ତିକୁ ମହାମାନବରେ ପରିଣତ କରେ ଏବଂ ସମାଜକୁ ଶ୍ରେଷ୍ଠ ନାଗରିକ ଦିଏ । ଅଧିକାଂଶ ଶ୍ରେଷ୍ଠ ନାଗରିକଙ୍କର ପିଲାଦିନ ଅବସ୍ଥା ସ୍ୱଚ୍ଛଳ ନଥିଲେ ମଧ୍ୟ ଏହି ସଂସ୍କାର ଯୋଗୁଁ ସେମାନେ ମହାମାନବ ହୋଇପାରିଛନ୍ତି, ଏପରିକି ରାଷ୍ଟ୍ରପତି ପଦ ମଧ୍ୟ ଅଳଙ୍କୃତ କରିଛନ୍ତି ।'' ତାର ଏପରି ସରଳତାପୂର୍ଣ୍ଣ ବାକ୍ୟ, ନିର୍ମଳ ଭାବମୂର୍ତ୍ତି ସମସ୍ତଙ୍କୁ ଚକିତ କରିଥିଲା । ସମସ୍ତଙ୍କ ଆଶୀର୍ବାଦ ତା'ଉପରେ ଝରି ପଡ଼ିଥିଲା । ଯେଉଁମାନେ ତା'ଉପରେ ଚୋରି ଅପରାଧ ଲଦି ଦେଇଥିଲେ, ସେମାନଙ୍କ ମଥା ତା' ଆଗରେ ନଇଁ ଯାଇଥିଲା ।

ବାଳକଟି ସମସ୍ତଙ୍କୁ ପ୍ରଣାମ କରି, ସମସ୍ତଙ୍କ ନିକଟରୁ ଆର୍ଶୀବାଦ ନେଇ, ମଥା ଉନ୍ନତ କରି ସେଠାରୁ ଫେରି ଆସିଥିଲା । (ଗ୍ରୀସ୍ ଦେଶର କଥା)

*ମାର୍ଫତ୍-ଶ୍ରୀ ଦୁର୍ଗାପ୍ରସାଦ ମିଶ୍ର, ନୂଆପଡ଼ା, ବାଲିସାହି, ରୁଚିଗଳି, କଟକ-୧୦*



୧୯୦୦ ମସିହାରେ ଦକ୍ଷିଣ ଆଫ୍ରିକାରେ ସମୟ ବିତାଉଥିବା ଆମର ଜାତିର ପିତା ମହାତ୍ମାଗାନ୍ଧୀ ।




ଶ୍ରୀ ଜ୍ୟୋତିରଂଜନ ବିଶ୍ୱାଳ

୧ । ପ୍ରୟଙ୍କା ଚୋପ୍ରା ଅଭିନୀତ 'ମ୍ୟାରୀ କମ୍' (Mary Kom) ଚଳଚ୍ଚିତ୍ରର ନିର୍ଦ୍ଦେଶକ କିଏ ?

୨ । ଭିଏତ୍‌ନାମର ମୁଦ୍ରାର ନାମ କ'ଣ ?

୩ । କ୍ରୁଗର ଜାତୀୟ ଉଦ୍ୟାନ (Kruger National Park) କେଉଁ ଦେଶରେ ଅବସ୍ଥିତ ?

୪ । ଜାତୀୟ ଖବରକାଗଜ ଦିବସ କେବେ ପାଳନ କରାଯାଇଥାଏ ?

୫ । 'Wake up India' ପୁସ୍ତକର ରଚୟିତା କିଏ ?

୬ । 'ଦିମାପୁର' କେଉଁ ରାଜ୍ୟର ଏକ ଜିଲ୍ଲାର ନାମ ?

୭ । HDTV ର ପୂର୍ଣ୍ଣ ରୂପଟି କ'ଣ ?

୮ । କେଉଁ ଖ୍ରୀଷ୍ଟାବ୍ଦରେ ଶ୍ରୀରାମକୃଷ୍ଣ ପରମହଂସ ଇହଲୀଳା ସମ୍ବରଣ କରିଥିଲେ ?

୯ । ଭାରତର ସବୁଠାରୁ ଧନୀ ସହର (The Richest City) କେଉଁଟି ?

୧୦ । ନଳ ସରୋବର ପକ୍ଷୀ ଅଭୟାରଣ୍ୟ (Nala Sarovar Bird Sanctuary) କେଉଁ ରାଜ୍ୟରେ ଅବସ୍ଥିତ ?

*ଦୁର୍ଗାପୁର, ଭାୟା-ତାଳଚେର, ଅନୁଗୁଳ- ୭୫୯୧୦୦*

*(ଉତ୍ତର ୨୭ ପୃଷ୍ଠାରେ)*

# ଭେଦଭାବ

ଶ୍ରୀ ବିଷ୍ଣୁମୋହନ

ଜୀବଜଗତର ପରମ ଆସନ
ଲଭିଛି ମଣିଷ ସିନା
ଖଣ୍ଡ, ବିଖଣ୍ଡ ଏକତାର ସେତୁ
ଭାଇଚାରା ଭାବ ବିନା ।
ଆପଣାପଣର ହୁଏ ଅବସାନ
ଜାତିଆଣ ଭେଦ ଭାବେ
ରକତର ଧାର ବହିଯାଏ ଦେଶେ
ତୀବ୍ର ସେ ଭାବ ଯେବେ ।
ଜାତିର କବଚ ପିନ୍ଧି ବାହୁରେ
ଶିଶୁ କି ଜନମ ନିଏ
ଜାତିପଣିଆରେ ଦେହର ରକତ
ଭିନ୍ନ କି ହୋଇଥାଏ ?
ହେଉ ଖୀରଷ୍ଟାନ ମୁସଲମାନ୍
ଶିଖ୍ ଅବା ହିନ୍ଦୁ କେହି
ତିଳ ତିଳ ଜଳେ ଜାତିଆଣ ଭାବେ
ଶ୍ରେଷ୍ଠତା ପାଏ ନାହିଁ ।
ମଣିଷ ତୋଳିଛି ଧରମ ପ୍ରାଚୀର
ବୈଷମ୍ୟର ଡାକ ଦେଇ
ମିଛେ ଶୋଣିତର ଫଲ୍‌ଗୁ ଖେଳୁଛି
ଧରମର ଧ୍ୱଜା ନେଇ ।
ଏହି ଜାତିଆଣ ମିଶାଣ, ଫେଡ଼ାଣ
ସଂହତି କରେ ଧ୍ୱଂସ
ହୃଦୟ ଡାକ ହୁଏ ନିଃଶେଷ
ସଂପର୍କ ହୁଏ ବିଷ ।

*ଏ/୫୮, କ୍ରିଷ୍ଣା ଗାର୍ଡେନ୍- ୨, ଖଣ୍ଡଗିରି, ଭୁବନେଶ୍ୱର- ୩୦*

---

ଶିକ୍ଷକ- କହିଲ ସତ୍ୟ ! ଆମେରିକା କେଉଁଠି ?

ସତ୍ୟ- (ମାନଚିତ୍ର ଭଲ କରି ଦେଖି) ସାର୍ ଏଇଠି ।

ଶିକ୍ଷକ- ଏଥର ମଣ୍ଟୁ ତୁମେ କୁହ, ଆମେରିକା କିଏ ଆବିଷ୍କାର କରିଥିଲେ ?

ମଣ୍ଟୁ- ସାର୍, ସତ୍ୟ ।

✤ ✤ ✤

ଲିଲିକୁ ସାର୍ ପଚାରିଲେ - ଆଜି କ'ଣ ତୋର ଟିଉସନ୍ ଆସିବା ଏତେ ଡେରି ହେଲା ?

ଲିଲି- ସାର୍, ଆମ ଘରେ ମାଆ ଓ ବାପା ଝଗଡ଼ା କରୁଥିଲେ ।

ସାର୍- ମାଆ, ବାପାଙ୍କ ଝଗଡ଼ାରେ ତୋର କ'ଣ କାମ ?

ଲିଲି- ମାଆ ପଟେ ଚପଲ ଓ ବାପା ପଟେ ଚପଲ ଧରିଥିଲେ । ମୁଁ ଖାଲି ଗୋଡ଼ରେ ଆସିଥାଆନ୍ତି କେମିତି ?

---

ପରିଚାରିକା, ଲିଫଟ୍ ଚାଳକ, ୪୪ + ୪.୪



# ଜହ୍ନ ରାତିରେ ପେଚା ଅନ୍ୱେଷଣ

ଡ. ପ୍ରଭାତୀ ମିଶ୍ର

ଏକ ବିଳମ୍ବିତ ଶୀତ ରାତି । ମୋ ଶୋଇବା ବେଳ ଗଡ଼ିଯାଇଥିଲା । ବାପାଙ୍କ ସାଥିରେ ବାହାରିଲି ପେଚା ଅନ୍ୱେଷଣରେ । ବାହାରେ ପବନ ବୋହୁ ନ ଥିଲା । ଗଛମାନେ ବିରାଟ ମୂର୍ତ୍ତି ସଦୃଶ ଧୀରସ୍ଥିର ଭାବେ ଦଣ୍ଡାୟମାନ ଥିଲେ । ତୋଫା ଜହ୍ନ କିରଣ ରାତ୍ରିର ଆକାଶକୁ ଆଲୋକିତ କରିଥିଲା । ଆମ ପଛଆଡୁ ଏକ ଟ୍ରେନ୍‌ର ହ୍ୱିସିଲ୍ ବାଜି ଶୋକ ସଙ୍ଗୀତର ସ୍ୱର ଶୁଭୁଥାଏ । ବାପା ମୋ ମୁଣ୍ଡକୁ ଏକ ସ୍କାର୍ଫରେ ଆବୃତ କରିଥିଲେ ମଧ୍ୟ ସେ ଶବ୍ଦ ମୋତେ ଶୁଭୁଥିଲା । ବେଳେବେଳେ କୁକୁରଟିଏ ଲହର ସ୍ୱରରେ ବୋବାଉଥିଲା । ଏସବୁ ଶବ୍ଦ ବନ୍ଦ ହୋଇଯିବା ପରେ ଜଙ୍ଗଲର ଚତୁର୍ଦ୍ଦିଗରେ ନୀରବତା ବିରାଜମାନ କଲା ।

ସ୍ଥାନେ ସ୍ଥାନେ ବରଫ ପଡ଼ି ଆମ ପାଦ ଗଳି ଯାଉଥାଏ । ବାପାଙ୍କର ଛାୟା ଦୀର୍ଘ ଥିଲା । ମୋର ଅପେକ୍ଷାକୃତ କ୍ଷୁଦ୍ର । ବାପାଙ୍କ ନିକଟକୁ ଯିବା ପାଇଁ ମୋତେ ଧାଇଁବାକୁ ହେଉଥିଲା । ମୋ ଛାଇ ମଧ୍ୟ ଡେଇଁ ଡେଇଁ ମୋ ପଛେ ପଛେ ଚାଲିଥାଏ । ମୁଁ ପାଟି ଫିଟାଉ ନ ଥାଏ । କାରଣ ବାପା କହିଥାଆନ୍ତି ରାତିରେ ପେଚା ଅନ୍ୱେଷଣରେ ଗଲେ କଥା କହିବନି ।

ମୁଁ ବାପାଙ୍କ ସଙ୍ଗେ ପେଚା ଦେଖିଯିବି ବୋଲି ବହୁ ଦିନରୁ ସ୍ୱପ୍ନ ଦେଖିଥିଲି । ମୁଁ ଭାବୁଥିଲି ଏପରି କାମ କ'ଣ କେବଳ ପୁଅପିଲା କରିବେ ? ମୁଁ ଝିଅଟିଏ ହେଲେ ମଧ୍ୟ ସାହସ ବାନ୍ଧିଲି ବାପାଙ୍କ ସାଙ୍ଗେ ଜଙ୍ଗଲକୁ ଯିବା ପାଇଁ । ଆମେ ଧାଡ଼ି ଧାଡ଼ି ହୋଇ ଠିଆ ହୋଇଥିବା ପାଇନ୍ ବୃକ୍ଷର ଜଙ୍ଗଲରେ ପହଞ୍ଚିଲୁ । ବାପା ହଠାତ୍ ଠିଆ ହୋଇ ଆକାଶକୁ ଚାହିଁଲେ, ସତେଯେପରି ସେ ତାରା ଓ ଜହ୍ନକୁ ଦେଖି ଦିଗ ନିର୍ଣ୍ଣୟ କରୁଛନ୍ତି । ପାଟିରେ ହାତଦେଇ ସେ ପେଚାପରି ଶବ୍ଦ ଉଚ୍ଚାରଣ କଲେ –

'ହୁ.....ଉ.... ଉ.... ଉ....'

କିଛି ସମୟ ଗଲା, ପୁନର୍ବାର ସେହିପରି ଶବ୍ଦ ସୃଷ୍ଟି କଲେ–

'ହୁ...ଉ... ଉ... ଉ....'

ଏହିପରି ତିନିଥର ସ୍ୱର ଉତ୍ତୋଳନ କରି ସେ ଚୁପ୍ ରହିଗଲେ । ଆମେ କାନେଇଥାଉ ଜଙ୍ଗଲ ଭିତରୁ କିଛି ଶବ୍ଦ ଆସୁଛି କି ?

ନା, କାହାରି ଉତ୍ତର ନାହିଁ ।

ବାପା ହତୋତ୍ସାହ ହେଲେ । ମୁଁ ଭାଇମାନଙ୍କ ଠାରୁ ଶୁଣିଥିଲି ଯେ ଅନେକ ସମୟରେ ପେଚାମାନେ ଦେଖାଯାଆନ୍ତି ନାହିଁ; ତଥାପି ଆମେ ଅଗ୍ରସର ହେଲୁ । ଥଣ୍ଡା ବଢୁଥାଏ, ସତେଯେପରି ବରଫ ସଦୃଶ କାହାର ଥଣ୍ଡା ହାତ ମୋ ପିଠିରେ ଲାଗିଲା । ମୋ ଗାଲ ଓ ନାକସବୁ ଥଣ୍ଡା ଓ ଗରମ ଲାଗୁଥାଏ । ମୁଁ କିନ୍ତୁ ପାଟି ଫିଟାଉ ନ ଥାଏ । ମୁଁ ଜାଣିଥିଲି, ପେଚା ଖୋଜିବାକୁ ଗଲେ ଚୁପ୍ ରହିବାକୁ ହେବ ।

ଆମେ ଜଙ୍ଗଲ ଭିତରେ ଆଗେଇ ଚାଲିଥାଉ । ଆମ ଛାଇମାନ ଧଳା ବରଫ ଉପରେ ପଡ଼ି କୃଷ୍ଣକାୟ ଦିଶୁଥାଏ । ଘୋଡ଼େଇ ହୋଇଥିବା ଉଲ୍‌ର ସ୍କାର୍ଫ୍ ମୋ ମୁହଁକୁ ଥଣ୍ଡାରୁ ରକ୍ଷା କରିପାରୁ ନ ଥାଏ । ଏହା ଓଦା ଲାଗୁଥାଏ । ମୁଁ କାହାରିକୁ ପଚାରି ପାରୁ ନ ଥାଏ ସେ କଳା ଗଛମାନଙ୍କ ପଛରେ କ'ଣ ଲୁଚିକି ଅଛି । ଦେଖିଲି, ଗୋଟିଏ ବଣୁଆ ମୂଷା ନିଶ ଫୁଲାଇ ମତେ ଦେଖି ବୁଦା ମଧ୍ୟରେ ଲୁଚିଗଲା ।

ମୁଁ ଶୁଣିଥିଲି ପେଚା ଖୋଜିଗଲେ ମନ ଭିତରେ ସାହସ ସଞ୍ଚୟ କରି ରଖିବାକୁ ହେବ । କ୍ରମଶଃ ଏହି ଘନଜଙ୍ଗଲ ପାର ହୋଇ ଆମେ ଏକ ବୃକ୍ଷହୀନ ସ୍ଥାନରେ ପହଞ୍ଚିଲୁ । ଜହ୍ନ ବହୁତ ଉପରେ ଥିଲା । ଶ୍ୱେତବର୍ଣ୍ଣର ବରଫାବୃତ ତଳଭାଗ ଦିଶୁଥାଏ ସତେଯେପରି ଆମକୁ ଆମ ମା' ଦେଉଥିବା ଖାଦ୍ୟ ସହ କ୍ଷୀର ଠାରୁ ଅଧିକ ଧଳା ।

ମୁଁ ଧୈର୍ଯ୍ୟ ହରାଉଥାଏ । କେତେବେଳେ ପେଚା ଦିଶିବ ? ମୋ ସ୍କାର୍ଫକୁ ମୁହଁ ଉପରେ ଲଗାଇ କାନେଇଥାଏ କିଛି ଶବ୍ଦ ଶୁଭୁଅଛି କି ?

ହଠାତ୍ ଏକ କୋକି ମୋ ପାଖଦେଇ ଚାଲିଗଲା । ଖସ୍ ଖସ୍ ଶବ୍ଦରେ ମୁଁ ଚମକିଗଲି ।

ବାପା ହାତକୁ ମୁହଁ ପାଖରେ ଦେଇ ପୁନର୍ବାର ଶବ୍ଦ କଲେ–

'ହୁ.... ହୁ.... ଉ.... ଉ...'

ମୋ ଆଖିରୁ ଥଣ୍ଡା ପାଇଁ ପାଣି ବୋହିଯାଉଥାଏ, କାନ ତାବ୍‌ଦା ଲାଗୁଥାଏ । ହଠାତ୍ ଏକ ପ୍ରତିଶବ୍ଦ ଶୁଭିଲା– ହୁ... ହୁ... ଉ....। ବାପା ହସିଲେ। ସେ ମଧ୍ୟ ଶବ୍ଦ କଲେ । ପୁନର୍ବାର ପ୍ରତିଶବ୍ଦ ଆସିଲା । ମତେ ଲାଗିଲା, ବାପା ଓ ପେଚାର କଥୋପକଥନ ଚାଲିଛି । ମୁଁ ଭାବୁଥିଲି ସେମାନେ କ'ଣ କଥା ହେଉଥିଲେ ? ଜଙ୍ଗଲ ନା ବରଫ ନା ଥଣ୍ଡା ନା ଜହ୍ନ ନା ରାତ୍ରିଭୋଜନ ?

ମୁଁ କୌତୂହଳରେ ମୁହଁରୁ ମଫଲର ଟେକିଦେଇ ହସିଲି ।



ପେଚାର ଡାକ ଆମ ନିକଟରୁ ଶୁଭିଲା– ଗଛ ଡାଳ ମଧ୍ୟରୁ– ବୁଦା ଗଛର ଉହାଡ଼ରୁ ହଠାତ୍ ଏକ ପେଚାର ଛାଇ ଦେଖିଲୁ । ଗଛ ଡାଳ ଉପର ଦେଇ ଆମ ପାଖ ଦେଇ ପେଚାଟି ଉଡ଼ିଗଲା । ଆମେ ନିଃଶବ୍ଦରେ ତା' ଗତିବିଧିକୁ ଅନୁଧ୍ୟାନ କରୁଥିଲୁ । ଆମ ପାଟିରେ ଉଷ୍ମତା ଓ ଶବ୍ଦ ପ୍ରକାଶନ କରିବାର ଉଷ୍ମତା ଆମେ ଅଙ୍ଗେ ଅଙ୍ଗେ ନିଭାଉଥିଲୁ । ପୁନର୍ବାର ସେହି ଛାୟା ମଧ୍ୟରୁ ସେହି ଶବ୍ଦ ହୁଟ୍.... ଉ... ଉ... । ଏଥର ବାପା ଟର୍ଚ୍ଚ ଆଲୁଅ ପକାଇଲେ । ଆଲୋକ ପଡ଼ି ପେଚାଟି ଡାଳରେ ବସିଥିବା ଦେଖାଗଲା । ଏକ ମିନିଟ୍ – ତିନି ମିନିଟ୍ – ବହୁ ସମୟ ଯାଏ ଆମେ ପେଚାଟିକୁ ଚାହିଁଥିଲୁ ଓ ସେ ଆମକୁ ଦେଖୁଥାଏ । ଗୋଲ ଗୋଲ ଆଖି ଦୁଇଟି ଆଲୁଅରେ ଧପ୍ ଧପ୍ କରୁଥାଏ । ମୁଁ ଭାବି ନ ଥିଲି ଜ୍ୟୋତ୍ସ୍ନାପ୍ଲାବିତ ଶୀତ ରାତିରେ ଶିଙ୍ଘ ଥିବା ପେଚା

ଦେଖିପାରିବି ବୋଲି । ଏହିପରି କିଛି ସମୟର ଦୃଷ୍ଟି ବିନିମୟ ପରେ ପେଚାଟି ତାର ବିରାଟ ପକ୍ଷ ଝାଡ଼ି ଗଛ ଡାଳରୁ ବିନା ଶବ୍ଦରେ ଉଡ଼ିଗଲା । ସତେଯେପରି ଏକ ଛାୟା ଜଙ୍ଗଲ ମଧ୍ୟରୁ ଅପସରି ଯାଇ ଧୀରେ ଧୀରେ ଅନ୍ଧକାର ସହିତ ମିଶିଗଲା ।

'ଚାଲ, ଏଥର ଘରକୁ ଫେରିଯିବା ।'

ବାପାଙ୍କ କଥା ଶୁଣି ମୁଁ ଖୁସି ହେଲି । ଏଥର ମୁଁ କଥା ହୋଇପାରିବି, ମୁଁ ସଶବ୍ଦ ହସିପାରିବି; କିନ୍ତୁ ଆଶ୍ଚର୍ଯ୍ୟର କଥା ମୋ ପାଟିରୁ କଥା ବାହାରିଲା ନାହିଁ । ମୁଁ ନିଜେ ଏକ ଛାୟା ପରି ବାପାଙ୍କ ଅନୁଧାବନ କଲି । ପେଚା ପ୍ରତି ଥିବା ମୋର ଅମୂଳକ ଭୟ ଦୂର ହୋଇଗଲା ।

ବାପା କହନ୍ତି– ପେଚା ଅନ୍ୱେଷଣରେ ଗଲେ ଧୈର୍ଯ୍ୟର ସହିତ ନିଃଶବ୍ଦରେ ଅଗ୍ରସର ହେବାକୁ ପଡ଼େ । ଉପରେ ଜହ୍ନ ଥିବ, ପେଚାଟି ଅନ୍ଧକାରରେ ଲୁଚିଥିବ, ନିସ୍ତବ୍ଧତା ମଧ୍ୟରେ ଆଶାର ବତିକୁ ଧରି ଆଗେଇ ଚାଲିବାକୁ ହେବ । ସମସ୍ତ ଉତ୍କଣ୍ଠାର ଅନ୍ତ ହେବା କଥା ଭାବି ମୁଁ ହୃଦୟଙ୍ଗମ କଲି, କାହିଁକି ବାପା ଜହ୍ନରାତିରେ ପେଚା ଅନ୍ୱେଷଣରେ ଯାଆନ୍ତି ।

(ଆମେରିକାର ଶିଶୁ-ଲେଖିକା ଜେନ୍ ହ୍ୟାଟ୍ ୟୋଲେନ୍‌ଙ୍କ ଗଳ୍ପର ମର୍ମାନୁବାଦ)

*୬୪୯-ମହାନଦୀ ବିହାର, କଟକ*

---

**ସାଧାରଣଜ୍ଞାନ ପରୀକ୍ଷାର ଉତ୍ତର :** ୧. ଉମଙ୍ଗ୍ କୁମାର (Omung Kumar), ୨. ଡୋଙ୍ଗ୍ (Dong), ୩. ଦକ୍ଷିଣ ଆଫ୍ରିକା, ୪. ଜାନୁୟାରୀ ୨୯, ୫. ଆନ୍ନିବେଶାନ୍ତ, ୬. ନାଗାଲାଣ୍ଡ, ୭. High Defination Television, ୮. ୧୮୮୬, ୯. ସୁରଟ, ୧୦. ଗୁଜୁରାଟ ।

# ନ୍ୟାୟଘଣ୍ଟି

ଶ୍ରୀ ଉମାକାନ୍ତ ମହାନ୍ତି

ସବୁଦିନ ପରି ଯଥାସମୟରେ ଦରବାର ଆରମ୍ଭ ହୋଇଗଲା । ପାତ୍ର-ମନ୍ତ୍ରୀ-ସେନାପତି ତଥା ସରଦାରମାନେ ବହୁ ଆଗରୁ ଆସି ଆସନ ଗ୍ରହଣ କରିସାରିଥାଆନ୍ତି । ଅପେକ୍ଷା ଥାଏ, କେବଳ ମହାରାଣୀଙ୍କ ଆଗମନକୁ ।

ଏହି ସମୟରେ 'ମହାରାଣୀଙ୍କର ଜୟ ହେଉ', 'ମହାରାଣୀଙ୍କର ଜୟ ହେଉ' ଧ୍ୱନିରେ ଗୃହ ଉଚ୍ଛୁଳି ଉଠିଲା । ମହାରାଣୀ ନିଜର ଗାମ୍ଭୀର୍ଯ୍ୟ ରକ୍ଷା କରି ରକ୍ଷୀମାନଙ୍କ ଗହଣରେ ଧୀର ପଦପାତରେ ଦରବାର ଗୃହରେ ପ୍ରବେଶ କଲେ । କାଳବିଳମ୍ବ ନ କରି ସିଂହାସନ ଉପରେ ବସିଗଲେ ମଧ୍ୟ । ଦରବାରରେ ନୀରବତା ଛାଇଗଲା ।

ଦରବାରରୁ ଚାର ପଠାଯାଇ ରାଜ ଅନ୍ତଃପୁରରେ ଥିବା ଯୁବରାଣୀ ମୋନାବାଈଙ୍କୁ ଦରବାରକୁ ଡକାଇ ଅଣାଗଲା । ମୋନାବାଈ ଦରବାରରେ ଉପସ୍ଥିତ ହେବା ମାତ୍ରେ, ମହାରାଣୀ ତାଙ୍କୁ ପ୍ରଶ୍ନ କଲେ, "ଆଚ୍ଛା ମୋନାବାଈ ! ତମେ ତ ଜଣେ ସନ୍ତାନବତୀ ମହିଳା; ସନ୍ତାନ ପ୍ରତି ଜଣେ ଜନନୀର କେତେ ମମତା ଅନ୍ତର ଭିତରେ ସାଇତା ହୋଇ ରହିଥାଏ ତୁମକୁ ସେ କଥା ଭଲ ଭାବେ ଜଣାଅଛି । ଏବେ କହିଲ, ଯଦି କେହି ଜଣେ ବିଚାରଶୂନ୍ୟ ଉଦ୍ଧତ ବ୍ୟକ୍ତି ଜଣେ ଜନନୀ ସମ୍ମୁଖରେ ତା'ର ସନ୍ତାନଟିର ପ୍ରାଣନାଶ କରେ, ତେବେ ତା'ପ୍ରତି କି ଦଣ୍ଡ ଦିଆଯିବା ଉଚିତ ?"

ଆଉ ବିଶ୍ରାମ କରିପାରିଲି ନାହିଁ । ଚାର ପଠାଇ ବୁଝିଲି ଯେ ଘଣ୍ଟିଟିକୁ କୌଣସି ମଣିଷ ନୁହେଁ, ଗାଈଟିଏ ବଜାଇ ଚାଲିଛି । ବୋଧହୁଏ ଗାଈଟିକୁ ତା'ମାଲିକ କିଛି ଖାଇବାକୁ ନ ଦେଇ ମରାପିଟା କରିଥିବାରୁ ଗାଈଟି ମୋ' ପାଖରେ ନ୍ୟାୟ ପାଇଁ ଗୁହାରି କରୁଛି ।

"ମହାରାଣୀ ମହୋଦୟା ! ସେହି ବ୍ୟକ୍ତି ପ୍ରତି ଅନୁରୂପ ଦଣ୍ଡର ଆବଶ୍ୟକତା ରହିଛି । ତା'ରି ସମ୍ମୁଖରେ ତା'ର ନିଜର ସନ୍ତାନଟିର ମଧ୍ୟ ପ୍ରାଣନାଶ କରାଯିବା ଉଚିତ ।" ଯୁବରାଣୀ ମୋନାବାଈ ଏହିପରି ଉତ୍ତରଦେଲେ ।

– "ଉଚିତ... ଉଚିତ ବିଚାର । ତୁମ ନିରପେକ୍ଷ ବିଚାର ପାଇଁ ମୁଁ ତୁମକୁ ବଧାଇ ଜଣାଉଛି ।" ମହାରାଣୀ ଏହିପରି ଉତ୍ତର ଦେଲେ ।

ଯୁବରାଣୀ ମୋନାବାଈଙ୍କୁ ସସମ୍ମାନେ ରାଜ-ଅନ୍ତଃପୁରକୁ ପଠାଇଦିଆଗଲା ।

ମହାରାଣୀ ଏବଂ ମୋନାବାଈଙ୍କ ମଧ୍ୟରେ ଚାଲିଥିବା କଥୋପକଥନରୁ ଦରବାରରେ ଉପସ୍ଥିତ ବ୍ୟକ୍ତିମାନେ କିନ୍ତୁ କେହି କିଛି ବୁଝିପାରିଲେ ନାହିଁ ।

ମହାରାଣୀ ଉପସ୍ଥିତ ବ୍ୟକ୍ତିମାନଙ୍କ ଉଦ୍ଦେଶ୍ୟରେ କହି ଚାଲିଲେ, "ଆପଣମାନେ ଶୁଣନ୍ତୁ ! ଗତକାଲି ଅପରାହ୍ଣରେ ମୁଁ ମୋ ବିଶ୍ରାମକକ୍ଷରେ ଥାଏ, ଏହି ସମୟରେ ରାଜବାଟୀ ସମ୍ମୁଖରେ ଟଙ୍ଗା ହୋଇଥିବା ନ୍ୟାୟ ଘଣ୍ଟିଟି କେହି ଜଣେ ବାରମ୍ବାର ବଜାଇ ଚାଲିଲା । ମୁଁ

ଆପଣମାନେ ଜାଣନ୍ତି, ରାଜବାଟୀ ସମ୍ମୁଖରେ ମୁଁ ଗୋଟିଏ ବୃହତ ଘଣ୍ଟା ଟଙ୍ଗାଇ ଦେଇଛି । ଯେଉଁମାନଙ୍କ ପ୍ରତି କୌଣସି ଅତ୍ୟାଚାର ହେଉଛି, ମନୁଷ୍ୟ ହୁଅନ୍ତୁ ବା ପଶୁପକ୍ଷୀ– ସେମାନେ ମୋ' ନିକଟରେ ଗୁହାରି କରିପାରନ୍ତି ।

ମୁଁ ଗାଈ ମାଲିକକୁ କିଛି ଦଣ୍ଡବିଧାନ କରିବା ପୂର୍ବରୁ ତା'କୁ ଡକାଇ ତା'ଠାରୁ ପ୍ରକୃତ ଘଟଣା ଶୁଣିବାକୁ ଇଚ୍ଛା କଲି । ଗାଈ ମାଲିକ ଯାହା କହିଲା, ସେ କଥା ଶୁଣି ମୁଁ ହତବାକ୍ ହୋଇଗଲି । ଗାଈର ମାଲିକକୁ କିଛି କ୍ଷତିପୂରଣ ଦେଇ ବିଦାୟ ଦେଇ ମୋ କର୍ତ୍ତବ୍ୟ ମୁଁ ସ୍ଥିର କରିନେଲି ।

ଆପଣମାନେ ଶୁଣି ଆଶ୍ଚର୍ଯ୍ୟ ହେବେ ଯେ ଅପରାଧୀ ଗାଈ ମାଲିକ ନୁହେଁ, ମୋର ପୁତ୍ର ଯୁବରାଜ ମାଲୋଜୀ ରାଓ ହେଉଛନ୍ତି ପ୍ରକୃତ ଅପରାଧୀ । ଗତ କାଲି ବେପରୁଆ ଭାବେ ମାଲୋଜୀ ରାଜଦାଣ୍ଡରେ ରଥ ଚାଳନା କରି ଅଭିଯୋଗକାରିଣୀ ଗାଈଟିର ନିକଟରେ ଜାତ ହୋଇଥିବା ବାଛୁରୀଟିକୁ ରଥ ଚକ ତଳେ ଦଳିଚକଟି ମାରି ପକାଇଛନ୍ତି । ଗାଈଟି ବିଚାରୀ ମୋ'ଠାରୁ ନ୍ୟାୟ ପାଇବା ପାଇଁ ଗୁହାରି କରିଛି ଆଉ ମୁଁ ଏହି ଅପରାଧ

ପାଇଁ କି ପ୍ରକାର ଦଣ୍ଡର ବ୍ୟବସ୍ଥା କରିଛି, ସେ କଥା ବି ଶୁଣନ୍ତୁ ।

ଆସନ୍ତାକାଲି ଅପରାହ୍ନରେ ଯୁବରାଜ ମାଲୋଜୀ ରାଓଙ୍କୁ ହାତପାଦ ବନ୍ଧା ଅବସ୍ଥାରେ ରାଜଦାଣ୍ଡରେ ପକାଇଦିଆଯିବ । ମୁଁ ନିଜେ ସେଠାରେ ଉପସ୍ଥିତ ରହିବି । ମୋର ବ୍ୟକ୍ତିଗତ ରଥଚାଳକ ଶାମ୍ଭାଜୀ ଦ୍ରୁତଗାମୀ ଅଶ୍ୱ ଚାରୋଟି ଯୋଚାଯାଇଥିବା ରଥଟିକୁ ଚଳାଇଆଣି ମାଲୋଜୀଙ୍କ ଉପରେ ଚଢ଼ାଇଦେବେ । ଆଗପଛ ନ ଦେଖି ବେପରୁଆ ଭାବେ ରଥଚାଳନା କଲେ ପରିଣାମ କ'ଣ ହୋଇପାରେ, ଆପଣମାନେ ସ୍ୱଚକ୍ଷୁରେ ଦେଖିବେ । ଜଣେ ମା'ର ଆଖି ଆଗରେ ତା'ର ସନ୍ତାନର ପ୍ରାଣନାଶ କଲେ, ମା' ମନରେ କି ପ୍ରକାରର ଦୁଃଖ ହୋଇଥାଏ, ମୁଁ ନିଜେ ସେ କଥା ଅନୁଭବ କରିବି ।"

ଆସନ୍ତାକାଲି ଅପରାହ୍ନରେ ଇନ୍ଦୋର ମହାନଗରୀର ରାଜଦାଣ୍ଡ ଲୋକାରଣ୍ୟ ହୋଇଗଲା । ଏପରି ଏକ ଅଦ୍ଭୁତ ଦଣ୍ଡ ଦେଖିବା ପାଇଁ ହଜାର ହଜାର ନଗରବାସୀ ଏକତ୍ର ହୋଇଗଲେ ।

ଯଥାସମୟରେ ହାତପାଦ ବନ୍ଧା ଯୁବରାଜ ମାଲୋଜୀ ରାଓଙ୍କୁ ରକ୍ଷୀମାନେ ନେଇ ଆସି ରାଜଦାଣ୍ଡରେ ଗଡ଼ାଇଦେଲେ । ମହାରାଣୀ ମଧ୍ୟ ଅବିଳମ୍ବେ ସେଠାରେ ଉପସ୍ଥିତ ହୋଇଗଲେ । ତୀବ୍ର ବେଗରେ ରଥ ଦଉଡ଼ାଇ ଆଣି ବନ୍ଦୀ ଯୁବରାଜଙ୍କ ଉପରେ ଚଢ଼ାଇଦେବା ପାଇଁ ମହାରାଣୀ ନିଜ ରଥଚାଳକ ଶାମ୍ଭାଜୀଙ୍କୁ ଆଦେଶ-ଦେଲେ ।

ଶାମ୍ଭାଜୀ କିନ୍ତୁ ଏ କାମ ପାଇଁ ରାଜି ହେଲେ ନାହିଁ । କହିଲେ, "ମହାରାଣୀ ମହୋଦୟା ! ମୁଁ ଏ କାମ କରିବା ପାଇଁ ଅକ୍ଷମ । ଯେଉଁ ଯୁବରାଜଙ୍କୁ ମୁଁ ଆଜି ପର୍ଯ୍ୟନ୍ତ କୋଳେଇ, କାଖେଇ, କାନ୍ଧରେ ବସାଇ, ଖେଳାଇ, ବୁଲାଇ ବଡ଼ କରି ଆସିଛି, ତାଙ୍କୁ ଏପରି ନିର୍ମମ ଭାବେ ହତ୍ୟା କରିବା ପାଇଁ ମୁଁ ସମ୍ପୂର୍ଣ୍ଣ ଅକ୍ଷମ । ମୁଁ ଆପଣଙ୍କ ଆଦେଶ ଅବମାନନା କରିଥିବାରୁ ମତେ ଆପଣ ପ୍ରାଣଦଣ୍ଡ ଦିଅନ୍ତୁ; ମୋ ମୁଣ୍ଡଟି ମୁଁ ଆପଣଙ୍କ ପାଦତଳେ ଥୋଇଦେଉଛି ।" ମହାରାଣୀ ଆଉ ବାକ୍ୟବ୍ୟୟ ନ କରି ସାରଥି ଶାମ୍ଭାଜୀଙ୍କ ବଦଳରେ ନିଜେ ରଥ ଉପରକୁ ଉଠିଗଲେ । ଖଣ୍ଡେ ଦୂରକୁ ରଥଟିକୁ ଫେରାଇନେଇ ତୀବ୍ରବେଗରେ ମାଲୋଜୀ ପଡ଼ିଥିବା ସ୍ଥାନ ଆଡ଼କୁ ମାଡ଼ି ଆସିଲେ । ସମସ୍ତଙ୍କ ଆଖି ବୁଜି ହୋଇଗଲା । କେହି କେହି କାନ୍ଦିବା ମଧ୍ୟ ଆରମ୍ଭ କରିଦେଲେ ।

ଏତିକିବେଳେ କିନ୍ତୁ ଏକ ଅଦ୍ଭୁତ ଘଟଣା ଘଟିଗଲା । ଅଭିଯୋଗକାରିଣୀ ଗାଈଟି କେଉଁଠି ଥିଲା କେଜାଣି, ହଠାତ ମାଡ଼ିଆସି ଅତ୍ୟନ୍ତ ଅବିଚଳିତ ଭାବେ ମହାରାଣୀଙ୍କ ରଥ ଆଗରେ ଠିଆ ହୋଇଗଲା । ମହାରାଣୀ ତାଙ୍କର ସମସ୍ତ ଶକ୍ତି ଖଟାଇ ଅଶ୍ୱମାନଙ୍କୁ ଅଟକାଇ ଦେଲେ । ରଥଟି ମଧ୍ୟ ରହିଗଲା । ନିଜ ପୁତ୍ର ମାଲୋଜୀ ରାଓଙ୍କ ଭଳି ସେ ନିଜେ ଆଉ ଏକ ଅନୁରୂପ ଅପରାଧ କରିବାକୁ ଉଚିତ ମଣିଲେ ନାହିଁ ।

ଗାଈଟି ବିଚାରୀ ତା' ସନ୍ତାନ ହତ୍ୟାଜନିତ ଦୁଃଖ ଭୁଲିଯାଇ ଯୁବରାଜ ମାଲୋଜୀଙ୍କୁ କ୍ଷମା କରିଦେଇଛି ବୋଲି ବିଚାର କରାଗଲା । ମାଲୋଜୀ ଜୀବନ ପାଇଗଲେ । ମହାରାଣୀଙ୍କ ଜୟଜୟକାରରେ ରାଜଦାଣ୍ଡ କମ୍ପିଉଠିଲା ।

ଉପରେ ଯେଉଁ ମହାରାଣୀଙ୍କ ନିରପେକ୍ଷ ବିଚାର ବିଷୟରେ କୁହାଗଲା, ସେ ହେଉଛନ୍ତି ଇତିହାସପ୍ରସିଦ୍ଧ ପୂର୍ବଇନ୍ଦୋର ରାଜ୍ୟର ହୋଲକାର ବଂଶର ମହାରାଣୀ ଅହଲ୍ୟାବାଈ । ଜଣେ ନୀତିନିଷ୍ଠ, ଦାନଶୀଳା, ଚରିତ୍ରବତୀ, ସୁଶାସିକା ତଥା ମହିୟସୀ ମହିଳା ରୂପେ ଇତିହାସରେ ମହାରାଣୀ ଅହଲ୍ୟାବାଈଙ୍କ ନାମ ସୁନା ଅକ୍ଷରରେ ରହିଯାଇଛି ।

*ମଣ୍ଡାସାହି, ଜଗତସିଂହପୁର- ୭୫୪୧୧୪*

# ଲେଖନୀର ପାଠଶାଳା

ରାମକୃଷ୍ଣ ନନ୍ଦ

ପାଠଶାଳାରେ ଯେଉଁ ପାଠ ପଢ଼ାଯାଏ, ତା'ର ବାରମ୍ବାର ପୁନରାବୃତ୍ତି କରାଯାଏ । ଆମେ ସେହିପରି ଏ ବିଭାଗରେ ଓଡ଼ିଆ ଭାଷା ସମ୍ବନ୍ଧରେ ଯେଉଁ ଆଲୋଚନା କରୁଛୁ, ତାହା ସମ୍ପୂର୍ଣ୍ଣ ନୂଆ ନୁହେଁ । ପୁରୁଣା ପିଲାଙ୍କ ପାଇଁ ଏହା ପୁନରାବୃତ୍ତି, କିନ୍ତୁ ନୂଆ ପାଠକଙ୍କ ପାଇଁ ନୂଆ ।

ନିମ୍ନଲିଖିତ ବାକ୍ୟଗୁଡ଼ିକରେ କ'ଣ ଭୁଲ୍ ଅଛି ଆସ ଦେଖିବା ।

- ପୁଅ ବିଦେଶରୁ ଆସିଥିବାରୁ ମାଆ ସେଦିନ ବିବିଧ ପ୍ରକାର ପିଠାପଣା ପ୍ରସ୍ତୁତ କରିଥିଲେ ।
- ବଡ଼ଭାଇ ଭାବରେ ତୁମେ ତାକୁ ଆବଶ୍ୟକୀୟ ପରାମର୍ଶ ଦିଅ ।
- କଥାବାର୍ତ୍ତା ନ କଲେ, ସେଇଟା ଅଭଦ୍ରାମୀ ହେବ ।
- ମୁଁ ଆପଣଙ୍କର ଜଣେ ଆଜ୍ଞାଧିନ ଛାତ୍ର ।
- ସରୋଜବାବୁ ଜଣେ ନୀତିବାନ୍ ବ୍ୟକ୍ତି ।
- କେବଳ ମଣ୍ଡଳ କମିଶନ ବିଷୟ ନୁହେଁ, ଆନୁସଙ୍ଗିକ କଥା ମଧ୍ୟ ପଢ଼ିବ ।
- ତୁମେ କବିସୂର୍ଯ୍ୟଙ୍କ କିଶୋର ଚନ୍ଦ୍ରାନନ ଚମ୍ପୂ ପଢ଼ିଛ ?
- ଆପଣ ସବାନ୍ଧବେ ଆମ ଗୃହକୁ ଆସିବେ ।
- ସେ ଯଦି ବା ଜଣେ ଉଚ୍ଚଶିକ୍ଷିତ; କିନ୍ତୁ ତାଙ୍କର ବିଚାର ବୁଦ୍ଧି କମ୍ ।
- ସବୁ ପିଲାମାନେ ହାଟଠାରେ ଏକତ୍ରିତ ହେଲେ ।

**ଆଲୋଚନା :**

**୧ ।** 'ବିବିଧ ପ୍ରକାର' ଅଶୁଦ୍ଧ; କେବଳ 'ବିବିଧ' କିମ୍ବା ନାନାପ୍ରକାର ପିଠାପଣା ହେବ । କାରଣ 'ବିଧ' ଅର୍ଥ ପ୍ରକାର; ସେପରି ନାନାବିଧ = ନାନାପ୍ରକାର, ବହୁବିଧ = ବହୁପ୍ରକାର, ଦ୍ୱିବିଧ = ଦୁଇପ୍ରକାର । ଏଣୁ ବିବିଧ ପ୍ରକାର ଲେଖିଲେ ଦ୍ୱିରୁକ୍ତିଦୋଷ ହେବ ।

**୨ ।** 'ଆବଶ୍ୟକୀୟ' ଏକ ସାଧାରଣ ଅଶୁଦ୍ଧି । ଆଶ୍ଚର୍ଯ୍ୟର କଥା ଯେ ଆକାଶବାଣୀ ଓ ଦୂରଦର୍ଶନରେ ଏହା ସମ୍ବାଦ ପ୍ରଚାରରେ ଏହା ବହୁଥର ବ୍ୟବହୃତ ହେଉଛି ।

'ଆବଶ୍ୟକ' ଶବ୍ଦଟି ବିଶେଷଣ ପଦ । ତେଣୁ 'ଆବଶ୍ୟକ' ପରାମର୍ଶ କହିଲେ ଠିକ୍ ହେବ । ବିଶେଷ୍ୟ ପଦରେ 'ଈୟ' ଯୁକ୍ତ ହୁଏ, ଯଥା– ଭାରତ+ ଈୟ = ଭାରତୀୟ; ଜଳ + ଈୟ= ଜଳୀୟ ଇତ୍ୟାଦି । ଜଳୀୟ ଅର୍ଥ ଜଳ ସମ୍ବନ୍ଧୀୟ ।

**୩ ।** ଅଭଦ୍ର+ଆମି=ଅଭଦ୍ରାମି । ସେହିପରି ଦୁଷ୍ଟାମି, ପାଗଳାମି ପ୍ରଭୃତି । ପ୍ରତ୍ୟୟଟି 'ଆମି' (ଆମୀ ନୁହେଁ)

**୪ ।** ଆଜ୍ଞା+ଅଧୀନ=ଆଜ୍ଞାଧୀନ । 'ଅଧିନ' ଲେଖିଲେ ବନାନ ଭୁଲ୍ ହେବ ।

**୫ ।** ନୀତିବାନ୍ ନୁହେଁ, ନୀତିମାନ୍ । ସେହିପରି ବୁଦ୍ଧିମାନ୍, ଦୀପ୍ତିମାନ୍; କିନ୍ତୁ ବଳବାନ୍, ଧନବାନ୍ ।

**୬ ।** ଠିକ୍ ବନାନଟି 'ଆନୁଷଙ୍ଗିକ' (ଅନୁଷଙ୍ଗ+ଇକ) ।

**୭ ।** ବହିଟିର ନାମ କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ; କିନ୍ତୁ

# ଗୋ'ମାତା

ଶ୍ରୀମତୀ କୁମୁଦଲତା ମହାନ୍ତି

ଗାଈଟିଏ ନିତି ଆମ ଦାଣ୍ଡେ ଆସେ
ଜେଜେମା ଦିଅନ୍ତି ପେଜ
ଏଇ କେତେ ଦିନ ହେଲା ସେ ଆସୁନି
ଜେଜୀଙ୍କୁ କହନ୍ତି ଜେଜ ।
ଜେଜେମାଆ ଦିନେ ଘରେ ପଚାରିଲେ
"ପେଜ ଫୋପାଡୁଛି କିଏ
ଗାଈକୁ ନ ଦେଇ ଫୋପାଡୁଛି କାହିଁ ?
ଗାଈ ପରା କ୍ଷୀର ଦିଏ !"
ଘରେ ତିନି ପୁଅ ତିନି ବୋହୂ ଛନ୍ତି
ନ ଦେଲେ କେହି ଉତ୍ତର
ସତ କହେ ସଦା ସାନ ବୋହୂ ଲତା
କହିଲା ଶାଶୂଙ୍କୁ ତାର ।
''ପେଜ ଗାଳି ଏବେ ଲୁଗାରେ ମୋହର
ନିତି ମଣ୍ଡ ଦେଉଅଛି
ମଣ୍ଡଦିଆ ଲୁଗା ପିନ୍ଧିବାକୁ ମୋତେ
ଭାରି ଭଲ ଲାଗୁଅଛି ।''
ଅତି ଶରଧାରେ ବୋହୂକୁ କହିଲେ
ବୁଝାଇସୁଝାଇ ଶାଶୂ
"ଗାଈକୁ ନ ଦେଇ ପେଜ ମାଆ ତୁହି
ମହାପୁଣ୍ୟ ନିତି ନାଶୁ ।"
ଶାଶୂଙ୍କର କଥା ମାନି ଏବେ ଲତା
ପେଜ ଗାଈଟିକୁ ଦିଏ
ପୂର୍ବ ପରି ଏବେ ଆମ ଦାଣ୍ଡଦ୍ୱାରେ
ଗାଈ ଆସି ଠିଆହୁଏ ।
ଗାଈକୁ ଗୋ'ମାତା କହନ୍ତି ଜଗତେ
ତାକୁ ପେଜ ଦେଲେ ପୁଣ୍ୟ
ଏ କଥା ପିଲାଏ ଭୁଲିବନି କେବେ
ରଖିଥିବ ସଦା ମନ ।

*ନୀଳାଦ୍ରି ବିହାର, ଭୁବନେଶ୍ୱର-୨୧*

---

ଅନେକ ଲୋକ ଭୁଲ୍‌ରେ ଲେଖନ୍ତି–କିଶୋରଚନ୍ଦ୍ରାନନ ଚମ୍ପୂ ।

**୮ ।** 'ସବାନ୍ଧବେ' ନୁହେଁ, 'ସବାନ୍ଧବ'– ଅର୍ଥାତ୍ ବାନ୍ଧବ ସହ । ସବାନ୍ଧବେ କଲେ ତାର ଅର୍ଥ ହେବ 'ବାନ୍ଧବସହ'ରେ ।

**୯ ।** ଏ ବାକ୍ୟରେ ଦୁଇଟି ଭୁଲ୍ ଅଛି । 'ସେ ଯଦିବା ଉଚ୍ଚ ଶିକ୍ଷିତ' କିମ୍ବା 'ସେ ଯଦିବା ଜଣେ ଉଚ୍ଚ ଶିକ୍ଷିତ ଲୋକ'—ଏ ଦୁଇଟିରୁ ଯେ କୌଣସି ଗୋଟିଏ କର । ଦ୍ୱିତୀୟ ଭୁଲ୍‌ଟି ହେଉଛି କିନ୍ତୁର ବ୍ୟବହାର । ଏଠାରେ 'କିନ୍ତୁ' ଆଦୌ ଆବଶ୍ୟକ ନାହିଁ ।

**୧୦ ।** ଏଥିରେ ମଧ୍ୟ ଦୁଇଟି ଭୁଲ୍ ଅଛି । 'ସବୁ ପିଲାମାନେ' ଭୁଲ୍ । କେବଳ 'ସବୁ ପିଲା' କର । 'ଏକତ୍ରିତ' ଆଉ ଏକ ଭୁଲ୍ । ଏକ+ତ୍ର=ଏକତ୍ର, ଅର୍ଥାତ୍ ଏକ ଜାଗାରେ । ଏଥିରେ 'ଇତ' ପ୍ରତ୍ୟୟ ଯୋଗ କଲେ ଅଶୁଦ୍ଧ ହେବ । ✤✤

# ସ୍ୱପ୍ନ ଓ ସତ୍ୟର ରୁପେଲି କଥା

ଡକ୍ଟର ସନ୍ତୋଷ କୁମାର ମିଶ୍ର

ବିଶିଷ୍ଟ ବୈଜ୍ଞାନିକ ତଥା ଭାରତର ଏକାଦଶତମ ରାଷ୍ଟ୍ରପତି ଏ.ପି.ଜେ. ଅବଦୁଲ୍ କଲାମ୍ ତାଙ୍କ ଆତ୍ମଜୀବନୀରେ ଏକ ଭାବଗର୍ଭକ ଉକ୍ତି ପ୍ରକାଶ କରିବାକୁ ଯାଇ ଉଲ୍ଲେଖ କରିଛନ୍ତି ଯେ– 'ସ୍ୱପ୍ନ ନୁହେଁ ଯାହା କେବଳ ନିଦ୍ରାରେ ଦେଖିବାକୁ ମିଳିଥାଏ । ସ୍ୱପ୍ନ ହେଉଛି ସେଇ, ଯାହା ନିଦକୁ ହଜାଇ ଦେଇଥାଏ ।'

କଥାଟିର ତାତ୍ପର୍ଯ୍ୟ ହେଉଛି ବିଜ୍ଞାନର ବିକାଶ ପାଇଁ କ'ଣ, କାହିଁକି ଓ କିପରିର ଉତ୍ତର ଖୋଜିବାକୁ ଗଲେ ବାସ୍ତବରେ ସ୍ୱପ୍ନ ଦେଖିବାକୁ ହୁଏ ଏବଂ ସେହି ସ୍ୱପ୍ନକୁ ସାକାର କରିବାକୁ ଗଲେ ନିଦକୁ ହଜାଇ କାମରେ ଲାଗିପଡ଼ିବାକୁ ହେବ । କଳାପ୍ରେମୀ, ରସାୟନବିତ୍, ଭୌତିକବିତ୍, ଗଣିତଜ୍ଞମାନଙ୍କର ସ୍ୱପ୍ନ ସବୁ ରୁପେଲି ପରଦାରେ ରୂପ ପାଇବା ପାଇଁ ଶହଶହ ବର୍ଷ ଲାଗିଗଲା ।

ବିଜ୍ଞାନଭିତ୍ତିକ ଉଚ୍ଚତର ଗବେଷଣାର ପ୍ରାଥମିକ ତଥ୍ୟ ପାଇଁ ଫଟୋଗ୍ରାଫି କେତେକ ବଳିଷ୍ଠ ମାଧ୍ୟମ ମଧ୍ୟରୁ ଗୋଟିଏ । ଇଂରାଜୀ ଶବ୍ଦ ଫଟୋଗ୍ରାଫି ଜନ୍ ଫ୍ରେଡ୍ରିକ୍ ହରଚେଲ (୧୭୯୨-୧୮୭୧)ଙ୍କ ଦ୍ୱାରା ୧୮୩୯ ମସିହାରେ ସୃଷ୍ଟି ହୋଇଥିଲା । ଏହା ଦୁଇ ଗ୍ରୀକ୍ ଶବ୍ଦ 'ଫୋସ୍'(ଆଲୋକ) ଓ 'ଗ୍ରାଫୋସ' (ଅଙ୍କନ କରିବା)ର ମିଳିତ ସମାହାର, ଯାହାର ଓଡ଼ିଆ ଅର୍ଥ ହେଲା 'ଆଲୋକଚିତ୍ର' ।

ଫଟୋଗ୍ରାଫି ଶବ୍ଦଟି ଉତ୍ପତ୍ତି ହେଲାବେଳେ ଆଲୋକ ଦ୍ୱାରା ସୃଷ୍ଟି ହେଉଥିବା ପ୍ରତିଛବିର ଲିପିବଦ୍ଧ ପଦ୍ଧତିଟିକୁ ବୁଝାଉଥିଲା । ଏବେ କିନ୍ତୁ ଏହାର ପରିସୀମା ବ୍ୟାପକ । ଦୃଷ୍ଟି ବର୍ଣ୍ଣାଳୀ (Visible Spectrum) ବ୍ୟତୀତ ଅନେକ ଅଦୃଶ୍ୟ ବିକିରଣ ବର୍ଣ୍ଣାଳୀ (Radiant Energy) ଦ୍ୱାରା ସୃଷ୍ଟି ହେଉଥିବା ଛବିକୁ ଫଟୋଗ୍ରାଫି ମାଧ୍ୟମରେ ଲିପିବଦ୍ଧ କରାଯାଇପାରୁଛି । ରଞ୍ଜନରଶ୍ମି (X-ray) ଏହାର ଏକ ଉଦାହରଣ ।

**ଖବର ସରବରାହର ମାଧ୍ୟମ :** ଭାବର ଆଦାନପ୍ରଦାନ ପାଇଁ ଫଟୋଗ୍ରାଫି ଏକ ମୁଖ୍ୟ ଭୂମିକା ଗ୍ରହଣ କରିଥାଏ, ଯାହା ପାଇଁ ଭାଷାର ପ୍ରୟୋଜନ ନ ଥାଏ । ଖବର କାଗଜରେ ମହାତ୍ମା ଗାନ୍ଧୀଙ୍କର ଦାଣ୍ଡିଯାତ୍ରାର ଶୁଭାରମ୍ଭ ହେଉ କିମ୍ବା ଶିଶୁମାନଙ୍କୁ କାମରେ ଲଗାଇବାର ପ୍ରମାଣ ସ୍ୱରୂପ କାର୍ଯ୍ୟରତ ଶିଶୁଟିର ଚିତ୍ର ହେଉ, କେବଳ ଲେଖା ହେଉଥିବା ଖବର ଅପେକ୍ଷା ଏସବୁ ପାଠକ ଉପରେ ଯଥେଷ୍ଟ ଅଧିକ ପ୍ରଭାବ ପକାଇଥାଏ । ଫଟୋଗ୍ରାଫି ଖବର ସଂଗ୍ରହ, ସାଇତା ଓ ପ୍ରକାଶନ– ଏପରି ତିନୋଟି କାର୍ଯ୍ୟ କରିପାରେ ।

**ବର୍ଦ୍ଧିତ ଦୃଷ୍ଟିଶକ୍ତିର ଆଧାର:** ବିଦ୍ୟୁତ ଚୁମ୍ବକୀୟ ତରଙ୍ଗ (Electromagnetic Wave) ଦ୍ୱାରା ଯେତେସବୁ ପ୍ରତିଛବି ସୃଷ୍ଟି ହୁଏ, ସେଥିରୁ ଅଳ୍ପ କିଛି ଅଂଶକୁ ମଣିଷ ଦେଖିପାରେ, ଯାହା ଆମେ ସାଧାରଣ ଭାବରେ ଧଳା ରଙ୍ଗର ଆଲୋକ ଦ୍ୱାରା ଦେଖିପାରୁଛେ । ଏହି ଧଳା ରଙ୍ଗର ଆଲୋକଟି ଅନେକ ରଙ୍ଗର ଆଲୋକ ବର୍ଣ୍ଣାଳୀର ମିଶ୍ରଣରେ ଗଠିତ । ଯଥା– ବାଇଗଣୀ, ଘନନୀଳ, ନୀଳ, ସବୁଜ, ହଳଦିଆ, ନାରଙ୍ଗି ଓ ଲାଲ । ଏହାକୁ ଦୃଷ୍ଟି ବର୍ଣ୍ଣାଳୀ ଆଲୋକ ତରଙ୍ଗ (Visible Spectrum) ବୋଲି ମଧ୍ୟ କୁହାଯାଏ । ଏହି ତରଙ୍ଗର ଦୈର୍ଘ୍ୟ ୪୦୦୦ରୁ ୭୦୦୦ ମିଲି ମାଇକ୍ରୋନ୍ ମଧ୍ୟରେ ରହିଛି । ଗୋଟିଏ ମିଲି ମିଟର ହେଉଛି ଦଶ ହଜାର ମାଇକ୍ରୋନ୍ । ଫଟୋଗ୍ରାଫି ଦ୍ୱାରା ବିଦ୍ୟୁତ ଚୁମ୍ବକୀୟ ତରଙ୍ଗ, ବିକିରଣ ଶକ୍ତି ଓ ଆଲୋକ

ତରଙ୍ଗ ଦ୍ୱାରା ସୃଷ୍ଟି ହେଉଥିବା ପ୍ରତିଚ୍ଛବିଗୁଡ଼ିକ ଲିପିବଦ୍ଧ କରାଯାଇଥାଏ । ଖାଲି ଆଖିରେ ଦେଖି ପାରୁ ନ ଥବା ଛବିକୁ ଫଟୋଗ୍ରାଫି ଦ୍ୱାରା ଦେଖା ଯାଇପାରୁଥିବାରୁ ଏହାକୁ ବର୍ଦ୍ଧିତ ଦୃଷ୍ଟିଶକ୍ତି (Extension of Vision) ବୋଲି କୁହାଯାଏ । ଅତି ଧୀର କିମ୍ବା ଅତି ବେଗରେ ଗତି କରୁଥିବା ବସ୍ତୁକୁ ଆମ ଆଖି ଠିକ୍ ଭାବରେ ଧରିପାରେ ନାହିଁ । ଫଟୋଗ୍ରାଫି ପଦ୍ଧତି ଦ୍ୱାରା ଏହାକୁ ଲିପିବଦ୍ଧ କରାଯାଇପାରେ ।

**କଳାତ୍ମକ ଭାବର ପ୍ରକାଶ :** ପ୍ରଥମ କାର୍ଯ୍ୟକାରୀ ଡାଗୁରୀ ଟାଇପ ଦ୍ୱାରା ସୃଷ୍ଟି ହୋଇଥିବା ନିଜର ଆଲୋକଚିତ୍ରଟି ଦେଖି ବିଶିଷ୍ଟ ଚିତ୍ରଶିଳ୍ପୀ ପଲ୍ ଡେଲାରୋଚି (Paul Delaroche) ଅତି ଆବେଗରେ କହିଥିଲେ ଯେ, "ଆଜିଠାରୁ ଚିତ୍ରଶିଳ୍ପୀର ମୃତ୍ୟୁ ଘଟିଲା ।" ଏହାର କାରଣ ହେଲା– ଜଣେ ବ୍ୟକ୍ତିର କଳାତ୍ମକ ଭାବର ପରିପ୍ରକାଶ ପାଇଁ ଚିତ୍ରଶିଳ୍ପୀଟି ଯେଉଁ ଅଧ୍ୟବସାୟ ବଳରେ ସମ୍ଭବ କରିପାରୁଥିଲା, ତାହା ଫଟୋଗ୍ରାଫି ବଳରେ ଅଳ୍ପ ସମୟ ମଧ୍ୟରେ ସମ୍ଭବ ହୋଇପାରିଲା । ଫଟୋଗ୍ରାଫିର ପ୍ରସାର ପରେ ପରେ ବହୁଳ ତୈଳଚିତ୍ରର ପ୍ରସ୍ତୁତି ଧୀରେ ଧୀରେ ବନ୍ଦ ହେବାକୁ ବସିଲା । ବର୍ତ୍ତମାନ ଫଟୋଗ୍ରାଫି ପଦ୍ଧତିଗୁଡ଼ିକର ପାହାଚମାନ ଯେଉଁସବୁ ସ୍ଥିତିରେ ପହଞ୍ଚିଛି, ସେହି ପରିପ୍ରେକ୍ଷୀରେ ତାହାର ବିବର୍ତ୍ତନ ପ୍ରଣାଳୀ ସମ୍ପର୍କରେ ଜାଣିବାର କିଛି ଆବଶ୍ୟକତା ନ ଥିଲେ ମଧ୍ୟ ସ୍ୱପ୍ନ ଦେଖିଲେ ଯେ ନିଶ୍ଚୟ ସଫଳତା ମିଳିବ, ଏହାର କାହାଣୀ ହେଉଛି ଫଟୋଗ୍ରାଫି –ଏତିକି ଜାଣିହେବ ।

**ଫଟୋଗ୍ରାଫିର ପୃଷ୍ଠଭୂମି:** ଫଟୋଗ୍ରାଫି ପାଇଁ ଅତ୍ୟନ୍ତ ଆବଶ୍ୟକ ପଡୁଥିବା ପଦାର୍ଥଟି ହେଲା ଆଲୋକ ସମ୍ବେଦନଶୀଳ ପଦାର୍ଥ । ଅର୍ଥାତ୍ ଆଲୋକ ଦ୍ୱାରା ପଦାର୍ଥଟିର ଭୌତିକ ତଥା ରାସାୟନିକ ପରିବର୍ତ୍ତନ । କ୍ୟାମେରା ଅବସ୍କୁରା ପ୍ରସ୍ତୁତ ହେବାର ୨୦୦୦ ବର୍ଷ ପୂର୍ବରୁ ଫୋଏନିସିଆନ୍ (Phoenicians)ମାନଙ୍କ ଦ୍ୱାରା ଏଭଳି ଏକ ପଦାର୍ଥ ଚିହ୍ନିତ ହୋଇଥିଲା । କୁହାଯାଏ ଯେ ଫୋଏନିକ ଦେଶଟି ପୃଥିବୀର ପ୍ରଥମ ମଣିଷ ସଭ୍ୟତା ଗଢ଼ିଉଠିଥିବା ଦେଶ । ଭୂମଧ୍ୟସାଗର ପୂର୍ବ ଉପକୂଳରୁ ଫୋଏନିସିଆନ୍‌ମାନେ ଆସିଥିବାର ଜଣାଯାଏ । ବର୍ତ୍ତମାନ ଏହା ଲେବାନନ (Lebanon) ନାମରେ ପରିଚିତ । ସେଠାରେ ମିଳୁଥିବା ଏକପ୍ରକାର ଗେଣ୍ଡାରୁ ବାହାରୁଥିବା ଅଠାଳିଆ ବା ଲାଳ ଭଳି ପଦାର୍ଥ (Slime) ସୂର୍ଯ୍ୟକିରଣ ପ୍ରଭାବରେ ବାଇଗଣି ରଙ୍ଗକୁ ପରିବର୍ତ୍ତନ ହୋଇଯାଉଥିଲା । ସୂର୍ଯ୍ୟକିରଣ ପ୍ରଭାବରେ କେତେକ ପଦାର୍ଥ ଯେ ରଙ୍ଗ ପରିବର୍ତ୍ତନ କରିବାର ସମ୍ଭାବନା ରହିଛି, ତାହାର ଖବର ସେମାନେ ଜାଣିଥିଲେ ।

ଫଟୋଗ୍ରାଫି ପଦ୍ଧତିର ମୌଳିକ ଆବଶ୍ୟକତା-ଗୁଡ଼ିକ ହେଲା– ପ୍ରତିଚ୍ଛବିଟିଏ ସୃଷ୍ଟି କରିବାର ବ୍ୟବସ୍ଥା (କ୍ୟାମେରା), ଆଲୋକର ତୀବ୍ରତା ଓ ପରିମାଣ, ସଠିକ ଛବିଟିଏ ପାଇଁ ଆଲୋକର ସମୟ ଅବଧି ଏବଂ ଆଲୋକ ସମ୍ବେଦନଶୀଳ ପଦାର୍ଥର ପ୍ରକାର ଓ ତାହାକୁ କ୍ରିୟାଶୀଳ କରିବା ପାଇଁ କାରିଗରୀ କୌଶଳ ।

ଚକ୍ଷୁ ଆମର କ୍ୟାମେରା ସଦୃଶ । କ୍ୟାମେରା ଅବସ୍କୁରା (Camara Obscura) ଦ୍ୱାରା ସୃଷ୍ଟି ହେଉଥିବା ପ୍ରତିଚ୍ଛବି ସ୍ଥାନରେ ଆଲୋକ-ସମ୍ବେଦନଶୀଳ ପଦାର୍ଥ ରଖାଯାଇ ସେଥିମଧ୍ୟକୁ ପ୍ରତିଚ୍ଛବିର ଆଲୋକ ନିକ୍ଷେପ କଲେ ରାସାୟନିକ ପ୍ରକ୍ରିୟାକରଣ ଦ୍ୱାରା ଏକ ସ୍ଥାୟୀ ପ୍ରତିଚ୍ଛବିଟିଏ ହୋଇପାରିବ । କ୍ୟାମେରା ଅବସ୍କୁରା ହେଉଛି ଏକ ଅନ୍ଧକାର ଗୃହ । ଏହି ଅନ୍ଧକାର ଗୃହର ଉତ୍ପତ୍ତି ପ୍ରଥମେ କେଉଁ ଦେଶରେ କିଏ ପ୍ରସ୍ତୁତ କରିଥିଲା, ତାହାର କୌଣସି ସଠିକ୍ ଖବର ମିଳେନାହିଁ ।

ଖ୍ରୀ.ପୂ. ୩୮୪ ରୁ ଖ୍ରୀ.ଅ.୫୩୩ ମଧ୍ୟରେ କ୍ୟାମେରା ଅବସ୍କୁରା ବିଷୟରେ ଗ୍ରୀକ୍ ଦେଶର ଗଣିତଜ୍ଞ

ତଥା ଦାର୍ଶନିକ ଆରିଷ୍ଟଟଲ୍, ଚୀନ୍ ଦେଶର ପୁରାତନ ଦାର୍ଶନିକ ମୋଜି (Mozi ) ଓ ଆଲେକଜାଣ୍ଡ୍ରିୟାର ଗଣିତଜ୍ଞ ଇଉକ୍ଲିଡ୍ ଛିଦ୍ର ଥିବା କ୍ୟାମେରା (Pinhole) ବିଷୟରେ ଉଲ୍ଲେଖ କରିଛନ୍ତି । ଆନ୍ଥେମିଅସ୍ (Anthemius) ନାମକ ଜଣେ ଜ୍ୟାମିତି ଗଣିତ ବିଶାରଦ କ୍ୟାମେରା ଅବସ୍କୁରା ବ୍ୟବାହର କରିଥିବାର ସୂଚନା ରହିଛି ।



କ୍ୟାମେରା ଅବସ୍କୁରା

ସମୟାନୁକ୍ରମେ ଏହାର ସାମଞ୍ଜସ୍ୟ ରକ୍ଷାକରି ଏକ ବାକ୍ସ, ଲେନ୍ସ ଏବଂ ଲେନ୍ସ ମଧ୍ୟକୁ ଆବଶ୍ୟକ ପରିମାଣ ମୁତାବକ ଆଲୋକ ଯିବାପାଇଁ ବ୍ୟବସ୍ଥାମାନ (ଡାୟାଫ୍ରାମ ବା ଗୋଲାକୃତି ରନ୍ଧ୍ରଯୁକ୍ତ ପର୍ଦ୍ଦା) ଯୋଗକରାଗଲା । ଏହାକୁ କଳାକାରମାନେ ଲୋକମାନଙ୍କର ରେଖାଚିତ୍ର ଅଙ୍କନ କରିବା ପାଇଁ ବ୍ୟବହାର କଲେ । ଲେନ୍ସକୁ ଆଗପଛ କରି ପ୍ରତିଛବିର ଆକାର ଓ ସ୍ୱଷ୍ଟ ଦୃଶ୍ୟ ପାଇଁ ଚମଡ଼ାର ବେଲୋଜ ଓ କୁଞ୍ଚ କୁଞ୍ଚ ଆକାରର ପରଦା ଯୋଗକରାଗଲା । କ୍ୟାମେରା ଅବସ୍କୁରାର କଳେବର ପରିବର୍ତ୍ତିତ ହୋଇ କ୍ୟାମେରା ବା ଅନ୍ଧକାର ବାକ୍ସ ଆଡ଼କୁ ଗତି କଲା ।

ଫଟୋଗ୍ରାଫି ଉଦ୍‌ଭାବନର ପିତା ବୋଲି କୁହାଯାଉଥିବା ଆଗଧାଡ଼ିର ସଫଳ ବୈଜ୍ଞାନିକ ୱେଜ୍‌ଉଡ୍, ନିପସି, ଡାଗୁରୀ ଓ ଫକ୍ସ-ଟାଲବଟ ପ୍ରଭୃତି ଏହି କ୍ୟାମେରା ଅବସ୍କୁରା ପ୍ରଚଳନ ଉପରେ ପୂର୍ଣ୍ଣଭାବେ ଅବଗତ ଥିଲେ ।



ବୈଜ୍ଞାନିକ ନିପସି



ବୈଜ୍ଞାନିକ ଡାଗୁରୀ

ରସାୟନଶାସ୍ତ୍ରାନୁସାରେ ଆଲୋକ ସମ୍ବେଦନଶୀଳ ପଦାର୍ଥଟିଏ ସୃଷ୍ଟିକରିବା ଲକ୍ଷ୍ୟରେ ଯେଉଁସବୁ ସନ୍ଦେହ ଉପୁଜିଥିଲା, ତାହାର କିଛି କିଛି ଉତ୍ତର ମିଳିଗଲା । ବିଶେଷତଃ ରୌପ୍ୟ ଲବଣ (Silver salts) ଉପରେ ସୂର୍ଯ୍ୟକିରଣର ପ୍ରଭାବ ଉପରେ କିଛି ବ୍ୟକ୍ତି କାର୍ଯ୍ୟ କରୁଥିଲେ । ୧୭୨୦ ମସିହାରେ ଜର୍ମାନ ବିଶ୍ୱବିଦ୍ୟାଳୟର ଭୌତିକବିତ୍ ତଥା ଚିକିତ୍ସାବିଜ୍ଞାନୀ ପ୍ରଫେସର ଜୋହାନ ହେନରିଚ୍ ଚୁଲଜି (Johan Heinrich Schulzec) ସିଲଭର ନାଇଟ୍ରେଟ୍‌କୁ ଏକ ବନ୍ଦକରା ଚୁଲି (Oven) ରେ ପୋଡ଼ିଲେ । ଉତ୍ତାପ ଓ ଆଲୋକ ମଧ୍ୟରୁ କେଉଁଟି ସିଲଭର ନାଇଟ୍ରେଟ୍‌କୁ କଳା କରିବାରେ ସହାୟକ ହେଉଛି, ସେହି କଥା ଜାଣିବା ତାଙ୍କର ଉଦ୍ଦେଶ୍ୟ ଥିଲା । ସେ ପତଳା କାଗଜରେ କିଛି ଶବ୍ଦ ରହିଥିବା ବାକ୍ୟକୁ କାଟିବା ପ୍ରଣାଳୀରେ ଲେଖିଦେଲେ । ଏହି ଲେଖାଟିକୁ ଏକ ସ୍ୱଚ୍ଛ କାଚ ଉପରେ ଲଗାଇ ତାହାକୁ ଏକ କାଚଘର ଭିତରେ ରହିଥିବା ଫୁଲଖଡ଼ି ଓ ରୌପ୍ୟ ଲବଣ ଦ୍ରବଣର ମିଶ୍ରଣ ମଧ୍ୟରେ ରଖି ସୂର୍ଯ୍ୟକିରଣରେ ରଖିଦେଲେ । ସୂର୍ଯ୍ୟଙ୍କ କିରଣ ଷ୍ଟେନ୍‌ସିଲ କଟା ବାଟ ଦେଇ ପଛରେ ରହିଥିବା ଫୁଲଖଡ଼ି ଓ ରୌପ୍ୟ ଲବଣର ମିଶ୍ରିତ ଘନୀଭୂତ ଦ୍ରବଣ ଉପରେ ପ୍ରତ୍ୟେକ ଶବ୍ଦ ସହିତ ସଂପୂର୍ଣ୍ଣ ବାକ୍ୟଟି ଅତି ସ୍ୱଷ୍ଟ ଭାବରେ ଏପରି ଭାବରେ ଲିପିବଦ୍ଧ ହୋଇଗଲା ଯେ ଯେଉଁମାନେ ଏହି ତଥ୍ୟାନୁସନ୍ଧାନ ପାଇଁ ଆଗ୍ରହୀ ଥିଲେ, ସେମାନେ



# କାଳୀ ବା ସାରଳା ଦାସ

ଶ୍ରୀ କାହ୍ନୁ ଚରଣ ପାଣିଗ୍ରାହୀ

ଯିଏ କାଳୀ ସେହି ସାରଳା
ସେହି ପୁଣି ଦେବୀ    ଜଗତ ଜନନୀ
କମଳା ଅଥବା ବିମଳା ।
ତାଙ୍କରି ଶରଣ ନେଇ
ଯେଉଁମାନେ ଏଇ    ଜନ ସମାଜକୁ
ଦାନ କିଛି ଗଲେ ଦେଇ ।
ତାଙ୍କରି ଭିତରୁ    ଦୁଇଜଣଙ୍କର
ନାଆଁ ତୁମ ପାଇଁ ଆଜି,
କହିବି ଶୁଣ ମୁଁ    କ'ଣ ସେ ଦେଲେ
ମାଆର ଭକତ ସାଜି ।
ବଳି ଭୋଜା ଦେଇ    ମାଆକୁ ମନେଇ
ଜଡ଼ିବୁଟି ଆଳ ନେଇ
ଆସି ନ ଥିଲେ ସେ    କାହାରି ପାଖକୁ
ନିଜ ବଢ଼ିଆଣା ଗାଇ ।

---

ଏହାକୁ ଦୃଷ୍ଟିଭ୍ରମ ବା ଏକ ଚତୁରତା ବୋଲି ମନେକଲେ । ଆଲୋକ ରଶ୍ମି ଦ୍ୱାରା ରୌପ୍ୟ ଲବଣ କଳା ହେବା କଥା ଜଣାପଡ଼ିଲା । ଏହି କଥାଟି 'ଫଟୋଗ୍ରାଫି' ଇତିହାସର ଏକ ମାଇଲ୍ ଖୁଣ୍ଟ ସୃଷ୍ଟିକଲା ।    (କ୍ରମଶଃ)

*ଏଚ୍.ଆଇ.ଜି. ୨୧/୪, ଓ.ଏସ୍.ଏଚ୍.ବି. କଲୋନୀ, ଫେଜ୍-୧, ଚନ୍ଦ୍ରଶେଖରପୁର, ଭୁବନେଶ୍ୱର-୭୫୧୦୧୬*



ତାଙ୍କ ଜମିବାଡ଼ି    ପଟ୍ଟା କବଲାରେ
ନାଆଁ ଲେଖାଥିଲା କିସ
ସେ ସବୁ ଅଜଣା    ଜଣା ଖାଲି ସିଏ
କାଳୀ ବା ସାରଳା ଦାସ ।
କାଳିଙ୍କର ଦାସ    କବି କାଳିଦାସ
ଏଇ ପରିଚୟ ଦେଇ
ସେ ଯେଉଁ କବିଟି    ଭାରତ ଭୂଇଁରେ
'ମେଘଦୂତ' ଗଲା ଗାଇ ।
ତାଙ୍କୁ ଆମେ କହୁ    ଉପମା ରାଇଜ ରଜା
ଆଜି ବି ପଢୁଛି ପଣ୍ଡିତ ସମାଜେ
ସେହିପରି କବି ଖୋଜା ।
ସାରଳାଙ୍କ ଦାସ    ସାଜି ଆଉ ଜଣେ
ଓଡ଼ିଶାର ଆଦିକବି,
ଗାଉଁଲି ଭାଷାରେ    ପୁରାଣ ଗାଇ ସେ
ଫୁଟାଇଲେ ଯେଉଁ ଛବି ।
କବିତା ଲେଖାର ଇତିହାସ ସେଠୁଁ ମିଳେ
ଅଠର ଖଣ୍ଡ ସେ ମହାଭାରତର
ଗରିମା କି କେବେ ଟଳେ ?

*ବିରୁହାଁ, ଜାହାଙ୍ଗୀର, ଧାମନଗର, ଭଦ୍ରକ*



# ନୁହଁଇ ଅନ୍ୟଥା ଗୁରୁଜନ କଥା

ଶ୍ରୀ ରତ୍ନାକର ଦାସ

ସାଇକେଲ ଚଳାଇ ଯାଉଥିବା ବାଳକ ଦୁହେଁ ଗଛମୂଳେ ବସିଥିବା ବୃଦ୍ଧଙ୍କୁ ପଚାରିଲେ– ମଉସା ! ଚନ୍ଦ୍ର ଗାଁ ଆଉ କେତେ ବାଟ ? ଆମେ ସୂର୍ଯ୍ୟ ଅସ୍ତ ହେବା ଆଗରୁ ପହଞ୍ଚିପାରିବୁ ?

ବୃଦ୍ଧଜଣଙ୍କ ତାଙ୍କ ଶୁଖିଲା ଓଠରେ ହସ ଖେଳାଇ କହିଲେ– "ହଁ ରେ ପିଲେ । ତମେ ପହଞ୍ଚିପାରିବ । କିନ୍ତୁ ଧୀରେ ଧୀରେ ଗଲେ ପହଞ୍ଚିବା ତମର ସହଜ ଓ ସୁଗମ ହେବ ।"

ପିଲାଦୁହେଁ ଆଗେଇଲେ ଆଗକୁ । ଅଳ୍ପ କିଛି ବାଟ ଯିବା ପରେ ବୃଦ୍ଧଙ୍କ କଥାଟି ତାଙ୍କ ମନରେ ସନ୍ଦେହ ସୃଷ୍ଟି କଲା । ଜଣେ ଅନ୍ୟ ଜଣଙ୍କୁ ପଚାରିଲା, "ଆମେ ଧୀରେ ଧୀରେ ଗଲେ ସୂର୍ଯ୍ୟାସ୍ତ ପୂର୍ବରୁ କ'ଣ ପହଞ୍ଚିପାରିବା ? ସୂର୍ଯ୍ୟାସ୍ତ ପରେ ସେଠାକୁ ଯିବା ବିପଦ ବୋଲି ତ ଆମେ ଶୁଣିଲେଣି ।'' ତେଣୁ ସେମାନେ ବୃଦ୍ଧଙ୍କ କଥାକୁ ଅବିଶ୍ୱାସ ବା ଛଳନା ଭାବି ଅଧିକ ବେଗରେ ସାଇକେଲ ଚଳାଇଲେ ।

କିଛି ବାଟ ଯିବା ପରେ ରାସ୍ତା ଏତେ ଖାଲଢିପ ଥିଲା ଯେ ଆଗରେ ଯାଇଥିବା ପିଲାଟି ପଡ଼ିଗଲା ତଳେ । ତା'ପଛରେ ଯାଉଥିବା ପିଲାଟି ମଧ୍ୟ ତା' ସହିତ ଧକ୍କା ଖାଇ ପଡ଼ିଲା । ଜଣେ ଅନ୍ୟଜଣଙ୍କ ସାହାଯ୍ୟରେ ସାଇକେଲ ଦୁଇଟିକୁ ଉଠାଇଲେ ତଳୁ । ଜଣଙ୍କର ମୁଣ୍ଡରେ ଆଘାତ ଲାଗି ରକ୍ତ ଝରୁଥିଲା । ଅନ୍ୟ ପିଲାଟିର ହାତ ମୁହଁ ରାମ୍ପି ହୋଇଯାଇଥିଲା । ସେମାନେ ଫେରି ଆସିବେ କି ଆଗକୁ ଯିବେ, ଏମିତି ଚିନ୍ତା କଲେ କିଛିକ୍ଷଣ । ଅନୁମାନ କଲେ ଯେ ଫେରିଆସିବା ଯେତିକି ବାଟ, ଆଗେଇବା ପାଇଁ ତା'ଠାରୁ କମ୍ ବାଟ ଅଛି । ଅନ୍ୟ କିଛି ଉପାୟ ନ ପାଇ ଦୁହେଁ ଧୀରେ ଧୀରେ ଆଗେଇଲେ ଚନ୍ଦ୍ର ଗାଁ ଅଭିମୁଖେ ।

ସେଠାରେ ପହଞ୍ଚିବାକୁ ଅଳ୍ପ କିଛି ବାଟ ଥାଏ, କିନ୍ତୁ ସୂର୍ଯ୍ୟ ଅସ୍ତ ହୋଇଗଲେ । ସନ୍ଧ୍ୟା ମାଡ଼ି ଆସିଲା । ଗଛ ଉହାଡ଼ରୁ ତିନି ଚାରିଜଣ ଲୋକ ଏ ପିଲା ଦୁହିଙ୍କ ଆଗକୁ ଆସି ଠିଆହେଲେ । ସେମାନଙ୍କ ହାତରେ ବି ମାରଣାସ୍ତ୍ର ଥିଲା । ଦୁହେଁ ନିରୁପାୟ ହୋଇ ସାଇକେଲ ଦୁଇଟିକୁ ଦେଇଦେଲେ ନିଜେ ବଞ୍ଚିବା ପାଇଁ ।

ଖଣ୍ଟମାନେ ପଳାଇଯିବା ପରେ ଦୁହିଙ୍କ ମୁଣ୍ଡରେ ଚେତା ପଶିଲା । ବୃଦ୍ଧଙ୍କ କଥାକୁ ହେଜି ବହୁତ ଅନୁତାପ କଲେ । ଆଖିରୁ ଲୁହ ଗଡ଼ାଇ ଭାବିହେଲେ, "ଆମେ ଯଦି ଧୀରେ ଧୀରେ ଆସିଥାନ୍ତେ, ରାସ୍ତାରେ କେବେ ପଡ଼ି ନ ଥାନ୍ତେ । ରକ୍ତ ବି ଝରି ନ ଥାନ୍ତା । ଏସବୁ ପାଇଁ ହୋଇଥିବା ବିଳମ୍ବରୁ ସନ୍ଧ୍ୟା ବି ଘନେଇ ଆସିଲା । ଯେଉଁ କାରଣରୁ ଆମେ ଘୋର ବିପଦର ସମ୍ମୁଖୀନ ହେଲେ ।"

# ଆଜିକା କାମ ଆଜି ସାର

ଶ୍ରୀ ନାରାୟଣ ଚନ୍ଦ୍ର ଧଳ

ଆମ ରାଜ୍ୟର ନାମ ଓଡ଼ିଶା । ସେହିଭଳି ଭାରତର ପଶ୍ଚିମ ଅଞ୍ଚଳରେ ଗୋଟିଏ ରାଜ୍ୟ ଅଛି, ସେହି ରାଜ୍ୟର ନାମ ରାଜସ୍ଥାନ । ଏହାର ବହୁ ଅଞ୍ଚଳରେ ମୋଟେ ବର୍ଷା ହୁଏନି । ସେଠାରେ ଭାରତର ବଡ଼ ମରୁଭୂମି ଦେଖାଯାଏ, ତା'ର ନାମ ଥର୍ ମରୁଭୂମି । ରାଜସ୍ଥାନର ଅନ୍ୟ ଅଞ୍ଚଳରେ ଅଳ୍ପ ଅଳ୍ପ ବର୍ଷା ହୁଏ । ଏଠାରେ ବାଜରା, ଗହମ, କପା ଆଦି ଚାଷ କରି ଲୋକମାନେ ନିଜର ଗୁଜୁରାଣ ମେଣ୍ଟାଇ ଥାଆନ୍ତି । ଲୋକେ ଓଟ, ଛେଳି ଆଦି ପଶୁପାଳନ ବି କରନ୍ତି । ଆମ ଅଞ୍ଚଳରେ ଘରଗୁଡ଼ିକର ଛାତ ଗଡ଼ାଣିଆ । ଏହା ଟାଇଲ୍, ଆଜବେଷ୍ଟସ୍, ଖପର, ଛଣ, ନଡ଼ା, ତାଳପତ୍ର, ନଡ଼ିଆପତ୍ରର ବି ହୋଇପାରେ । ପ୍ରବଳ ବର୍ଷା ହେଲେ ପାଣି ତଳକୁ ଗଡ଼ିଆସେ । ଘରର କିଛି କ୍ଷତି ହୁଏନି । ଛଣ, ନଡ଼ା ଆଦି ଛପରକୁ ପ୍ରତିବର୍ଷ ନୂଆ ଛପର କରିବାକୁ ହୁଏ । ମାତ୍ର ରାଜସ୍ଥାନର ଅଳ୍ପ ବର୍ଷା ହେଉଥିବା ଅଞ୍ଚଳର ଘରର ଛାତ କୋଠାଘରର ଛାତ ଭଳି ସମତଳ ଓ ମାଟିରେ ତିଆରି । ପ୍ରତିବର୍ଷ ମାଟି ପକାଇ ଛାତ ମରାମତି କରାଯାଏ ।

ରାଜସ୍ଥାନର ଏକ ଛୋଟିଆ ଗାଆଁ । ଦଶ ପନ୍ଦରଟି ପରିବାର ସେଠାରେ ବାସ କରନ୍ତି । ଦୀପୁ ବୋଲି ଜଣେ ଯୁବକ ସେହି ଗାଁ'ର ଲୋକ । ପରିବାର କହିଲେ ତାର ସ୍ତ୍ରୀ ସତୀ, ଛୋଟ ଝିଅଟିଏ । ସତୀ କିଛି ପାଠ ପଢ଼ିଛି । ଭାରି ଚତୁର ଓ ପରିଶ୍ରମୀ; କିନ୍ତୁ ଦୀପୁ ଭାରି ଅଳସୁଆ ଓ ଠାପୁଆ । କାମକୁ ଠିକ୍ ସମୟରେ କରେନି ।

ଦିନେ ସତୀ ଦୀପୁକୁ କହିଲା, "ଖରାଦିନ ସରି ସରି ଆସିଲାଣି । ଆଗକୁ ବର୍ଷାଦିନ ଆସୁଛି । ଛାତ ଉପରେ ମାଟି ପକାଇବା କଥା । ତୁରନ୍ତ ସେ କାମ ସାରିଦିଅ ।"

ଦୀପୁ ଥିଲା ଆରାମ୍ କରିବାର ଲୋକ । ସେ କହିଲା, "ଏତେ ତରବର ହେବାର କ'ଣ ଅଛି ? କେତେ ବା କାମ ! ମାଟି ପକାଇବା ପାଇଁ କେତେ ବା ସମୟ ଲାଗିବ ? ଏହି ଛୋଟିଆ କାମ ପାଇଁ ମୋତେ ବସେଇ-ଉଠେଇ ଦେଉନାହଁ !" ବିଚରା ସତୀ ଚୁପ୍ ରହିଲା ।

କିଛିଦିନ ପରେ ଆକାଶରେ ବାଦଲ ଭାସିବାର ଦେଖାଗଲା । ସତୀ ପୁଣି ଥରେ ଦୀପୁକୁ ଛାତରେ ମାଟି ପକାଇବା କଥା ମନେ ପକାଇଦେଲା । ଦୀପୁ କହିଲା, "ଭୋକିଲା କୁକୁର କାମୁଡ଼େ ନାହିଁ କି ଗରଜିଲା ମେଘ ବରଷେ ନାହିଁ । ଦିନେ ଦୁଇଦିନରେ ମାଟି ପକାଇଦେବା । ପାଟି କରିବା ତୁମର ଗୋଟିଏ ବଦଭ୍ୟାସ ।"

ଏହା ଭିତରେ ଦୁଇଦିନ ବିତିଗଲା । ହଠାତ୍ କଳାହାଣ୍ଡିଆ ମେଘ ଘୋଟି ଆସିଲା । ବିଜୁଳି, ଘଡ଼ଘଡ଼ି ମାରିଲା । ପ୍ରବଳ ବେଗରେ ପବନ ବୋହିଲା । ତୁହାକୁ ତୁହା ବର୍ଷା ଆରମ୍ଭ ହୋଇଗଲା । ସେ ଅଞ୍ଚଳରେ ଏପରି

---

ସେମାନେ ଚାଲି ଚାଲି ଯାଇ ଚନ୍ଦ୍ର ଗାଁ'ର ସାଙ୍ଗଙ୍କ ଘରେ ପହଞ୍ଚିଲେ ରାତିରେ । ଏ ଦୁହିଙ୍କ ଅବସ୍ଥା ଦେଖି ବାପା ତାଙ୍କୁ ସାନ୍ତ୍ୱନା ଦେଲେ ଓ କ୍ଷତସ୍ଥାନରେ ମଲମ ଲଗାଇ କପଡ଼ା ବାନ୍ଧିଦେଲେ ।

ତହିଁ ଆରଦିନ ସକାଳେ ସବୁ କଥା ଶୁଣିବା ପରେ, 'ଗୁରୁଜନଙ୍କ କଥାକୁ ଏଡ଼େଇଦେଲେ ଏମିତି ଭୋଗିବାକୁ ହୁଏ' ବୋଲି ଗାଁ ଲୋକେ ଚେତାଇଦେଲେ ସେ ଦୁହିଙ୍କୁ ।

*ଶଂଖୋ, ଫକୀରପୁର, କେନ୍ଦୁଝର- ୨ ୨*

ବର୍ଷା କେବେ ହୋଇ ନ ଥିଲା । ଛାତ ଗଳି ପଡ଼ିଲା । ଦୀପୁ ଦୌଡ଼ି ଦୌଡ଼ି ମରାମତି କରିବାକୁ ଚେଷ୍ଟା କଲା । ସେତେବେଳକୁ ନେଡ଼ିଗୁଡ଼ କହୁଣୀକୁ ବୋହିଯାଇଥିଲା ।

ସତୀ ଦୀପୁକୁ କହିଲା, "ମୋ କଥାକୁ ଫୁଙ୍କରେ ଉଡ଼ାଇଦେଲ, କି ହିନସ୍ତା ହେଲ ! ଘରସାରା ପାଣି ଲହଡ଼ି ଖେଳୁଛି । ଛୋଟ ଝିଅକୁ ନେଇ କିପରି ରହିବା ? ସେଥିପାଇଁ କୁହାଯାଇଛି– ଆସନ୍ତାକାଲିର କାମକୁ ଆଜି ଆରମ୍ଭ କର । ଆଜିର କାମକୁ ବର୍ତ୍ତମାନ ଆରମ୍ଭ କର । ମହୀ କ୍ଷଣକ୍ଷଣକେ ଆନ । ଗୋଟିଏ ମୁହୂର୍ତ୍ତ ମଧ୍ୟରେ କ'ଣ ବି ଘଟିପାରେ । କାମ ବାକି ରହିଲେ, କାମ ଶେଷ କରିବା ପାଇଁ ଆମର ଆୟୁଷ ବି ନ ଥାଇପାରେ ।"

ଦୀପୁ ନିଜର ଭୁଲ୍ ବୁଝିପାରିଲା । ନୀରବ ରହିଲା । ଭାବିଲା, "ଆଜିର କାମ ଆଜି ସାରିବା ବୁଦ୍ଧିମାନର କାମ ।"

*ଶ୍ରୀରାଧା ଭବନ, ଅପର୍ତ୍ତିବିନ୍ଧା, ଭଦ୍ରକ-୭୫୬୧୦୦*

# ସନ୍ଥ ତୁକାରାମ ଓ ଶିବାଜୀ

ଶ୍ରୀ କରୁଣାକର ଭୋଇ

ଘଟଣାଟି ମରାଠା ଛତ୍ରପତି ଶିବାଜୀଙ୍କ ଶାସନ କାଳର କଥା । ଶିବାଜୀଙ୍କ ଦେଶପ୍ରେମ, ବୀରତ୍ୱ, ବଳ, ସାହସ, ଅସୀମ ଧୈର୍ଯ୍ୟ ଓ ଚତୁରତାରେ ବ୍ୟତିବ୍ୟସ୍ତ ହୋଇ ମୁସଲମାନ ଶାସକ ଆଦିଲସାହ ତାଙ୍କୁ କରାୟତ୍ତ କରି ପାରୁ ନ ଥାନ୍ତି । ଯେତେଥର ତାଙ୍କ ରାଜ୍ୟକୁ ଆକ୍ରମଣ କଲେ ବି ମୁଷ୍ଟିମେୟ ସୈନ୍ୟବଳରେ ଶିବାଜୀ ଆଦିଲସାହଙ୍କ ବିରାଟ ସୈନ୍ୟବାହିନୀକୁ କାବୁ କରି ପାରୁଥିଲେ । ଆଦିଲସାହଙ୍କ ଅନେକ ଚେଷ୍ଟା ସତ୍ତ୍ୱେ ଶିବାଜୀଙ୍କର କେଶ ସେ ବଙ୍କା କରି ପାରୁ ନ ଥିଲେ ।

ସେହି ସମୟରେ ଶିବାଜୀଙ୍କ ରାଜ୍ୟରେ ଜଣେ ମହାନ୍ ସାଧୁ ସହରର ଅନତି ଦୂରରେ ଆଶ୍ରମଟିଏ ପ୍ରତିଷ୍ଠା କରି ଜପ, ତପଃ, ଭଜନ, କୀର୍ତ୍ତନ କରି କାଳାତିପାତ କରୁଥିଲେ । ତାଙ୍କ ସହିତ କିଛି ଶିଷ୍ୟ ବି ଥା'ନ୍ତି । ତାଙ୍କର ପରମ ଆରାଧ୍ୟ ଦେବତା ହେଉଛନ୍ତି ଭଗବାନ ଶ୍ରୀକୃଷ୍ଣ । ତାଙ୍କୁ ସେ ପାଣ୍ଡୁରଂଗା ବୋଲି ସମ୍ବୋଧନ କରୁଥିଲେ । ସେ ପାଣ୍ଡୁରଂଗାଙ୍କ ସେବା, ପୂଜା, ଭଜନ, କୀର୍ତ୍ତନରେ ଏତେ ମଜ୍ଜି ଯାଉଥିଲେ ଯେ ଅନ୍ୟ କୌଣସି କାର୍ଯ୍ୟ ପାଇଁ ତାଙ୍କ ପାଖେ ସମୟ ନ ଥିଲା । ତାଙ୍କୁ ଲୋକେ ସନ୍ଥ ତୁକାରାମ ବୋଲି କହୁଥିଲେ ।

ତାଙ୍କୁ ଲୋକେ ତ୍ରିକାଳଦର୍ଶୀ, ସାକ୍ଷାତ ଭଗବାନ ବୋଲି ବିବେଚନା କରୁଥିଲେ । କିନ୍ତୁ ସେ ଖୁବ୍ ସରଳ, ନିରାଡ଼ମ୍ବର ଥିଲେ ଏବଂ ଭକ୍ତି ଭାବରେ ବୁଡ଼ି ରହୁଥିଲେ । ତାଙ୍କ ବିଷୟରେ କିଏ କ'ଣ କହୁଛି, ସେ ମୋଟେ ଧ୍ୟାନ ଦେଉ ନ ଥିଲେ । ନିନ୍ଦା, ପ୍ରଶଂସାର ସେ ବହୁ ଉର୍ଦ୍ଧ୍ୱରେ

ଥିଲେ । କ୍ରମେ ତାଙ୍କ ଖ୍ୟାତି ସର୍ବତ୍ର ବ୍ୟାପିଗଲା । ଏକଥା ଛତ୍ରପତି ଶିବାଜୀ ଜାଣି ମଧ୍ୟ କେବେ ତାଙ୍କୁ ସାକ୍ଷାତ କରିବାର ସୁଯୋଗ ପାଉ ନ ଥିଲେ ବ୍ୟସ୍ତତା ଭିତରେ ବୁଡ଼ି ରହି ।

ଥରେ ଶିବାଜୀ ରାଜ୍ୟର ସୀମାନ୍ତରୁ ରାଜଧାନୀକୁ ଫେରୁଥାନ୍ତି । ତାଙ୍କ ସାଂଗରେ ଥା'ନ୍ତି ତାଙ୍କର ସୈନ୍ୟବଳ । ପ୍ରବଳ ଖରା ହେଉଥାଏ । ସୈନ୍ୟସାମନ୍ତ, ଘୋଡ଼ା ସବୁ ପ୍ରବଳ ଭୋକ ଓ ଶୋଷରେ ଅତିଷ୍ଠ ହୋଇ ପଡ଼ିଥାନ୍ତି । ସେହି ବାଟ ଦେଇ ଆସୁ ଆସୁ ଶିବାଜୀ ଦେଖିଲେ ଅଳ୍ପ ଦୂରରେ ତୁକାରାମଙ୍କ ଆଶ୍ରମ ଅଛି । ତେଣୁ ସେ ଏଇ ଅପୂର୍ବ ସୁଯୋଗକୁ ହାତଛଡ଼ା ନ କରି ସନ୍ଥଙ୍କୁ ଦର୍ଶନ କରିବା ନିମନ୍ତେ ଆଶ୍ରମକୁ ପ୍ରବେଶ କଲେ । ସନ୍ଥ ତୁକାରାମ ଆଶ୍ରମରେ ବିଶ୍ରାମ ନେଉଥାନ୍ତି । ଶିବାଜୀଙ୍କୁ ଦେଖି ଆଶୀର୍ବାଦ କରି, ତାଙ୍କ କୁଶଳ ଜିଜ୍ଞାସା କରି, ବସିବାକୁ ଆସନ ଦେଲେ । ଶିବାଜୀ ତାଙ୍କଠାରୁ କିଛି ସତ୍ ଉପଦେଶ ଶୁଣୁଥାନ୍ତି । ଏତିକିବେଳେ ଶିଷ୍ୟଟିଏ ଆସି ସନ୍ଥ ତୁକାରାମଙ୍କୁ ନତମସ୍ତକ ହୋଇ ପ୍ରଣାମ କଲା । କହିଲା– "ଗୁରୁଦେବ ! ମଧ୍ୟାହ୍ନ ଭୋଜନ ସମୟ ହୋଇଗଲାଣି । ଭୋଜନ ପ୍ରସ୍ତୁତ ହୋଇଛି । ଆସନ୍ତୁ ଭୋଜନ କରିବା ହେବେ ।" ସନ୍ଥ ତୁକାରାମ ଭୋଜନ ପାଇଁ ଆସନରୁ ଉଠିଲେ । ଶିବାଜୀଙ୍କୁ କହିଲେ, "ବତ୍ସ ! ତୁମ ସୈନ୍ୟସାମନ୍ତ ସମସ୍ତଙ୍କୁ କହ, ସେମାନେ ଆମ ସହିତ ଭୋଜନ କରିବେ । ପାଣ୍ଡୁରଂଗା ଯାହା ଦେଇଛି, ସମସ୍ତେ ଭୋଜନ କରିବା ।"

ଶିବାଜୀ ବଡ଼ ଅଡୁଆରେ ପଡ଼ିଲେ । ଆଶ୍ରମରେ ମାତ୍ର ପାଞ୍ଚ ସାତଜଣଙ୍କ ପାଇଁ ଖାଦ୍ୟ ପ୍ରସ୍ତୁତ ହୋଇଛି । ତାଙ୍କର ବିରାଟ ସୈନ୍ୟବାହିନୀ କେମିତି ଖାଇବେ; ନିହାତି ନିଅଣ୍ଟ ହେବ । ଏଣେ ଖାଦ୍ୟ ପ୍ରସ୍ତୁତ ହୋଇଥିବା ପାତ୍ରମାନଙ୍କୁ ଚାହିଁବାରୁ ଜଣାଗଲା ଯେ ସମସ୍ତ ରନ୍ଧାସାମଗ୍ରୀ ପାଞ୍ଚ ଛଅଜଣରୁ ଅଧିକଙ୍କୁ ହେବନାହିଁ । ଯଦି ସେ



ଖାଇବେ, ଆଶ୍ରମର ଶିଷ୍ୟମାନେ ଖାଇବେ କ'ଣ ? ସେ ବିନୀତ ହୋଇ ସନ୍ଥଙ୍କୁ କହିଲେ, "ମହାତ୍ମା ! ଆପଣମାନେ ଭୋଜନ କରନ୍ତୁ । ଆମେ ରାଜବାଟୀରେ ପହଞ୍ଚିଲେ ଭୋଜନ କରିବୁ ।"

ସନ୍ଥ ତୁକାରାମ ଶିବାଜୀଙ୍କ ମନକଥା ବୁଝିଗଲେ । ସେ କହିଲେ, "ଖାଦ୍ୟସାମଗ୍ରୀ ଯଥେଷ୍ଟ ଅଛି । ଆମେ ସମସ୍ତେ ଯେତେ ଖାଇଲେ ବି ବଳି ପଡ଼ିବ । ପାଣ୍ଡୁରଂଗା ତା'ର ବ୍ୟବସ୍ଥା କରିବନି କି ।"

ଏହା କହି ସେ ସମସ୍ତ ରନ୍ଧାପାତ୍ରର ମୁହଁକୁ ଲୁଗାଦ୍ୱାରା ଢାଙ୍କିଦେବାକୁ ଶିଷ୍ୟମାନଙ୍କୁ ଆଦେଶ ଦେଲେ । ତା'ପରେ ପାଟି କରି କହିଲେ, "ପାଣ୍ଡୁରଂଗା ଭୋଜନର ବ୍ୟବସ୍ଥା କର! ଆମେ ଖାଇବୁ!'' ତା'ପରେ ପାତ୍ରଗୁଡ଼ିକର ମୁହଁରୁ ଲୁଗା କାଢ଼ିଦେବାକୁ କହିଲେ ।

ଆରେ ଏ କ'ଣ ? ବଡ଼ ଆଶ୍ଚର୍ଯ୍ୟ କଥା । ବିଭିନ୍ନ ସୁସ୍ୱାଦୁ ଖାଦ୍ୟସାମଗ୍ରୀରେ ପାତ୍ର ସବୁ ଭର୍ତ୍ତି ହୋଇଯାଇଛି । ସମସ୍ତେ ମନ ଇଚ୍ଛା ପେଟ ଭର୍ତ୍ତି ଖାଇଲେ; ତଥାପି ଖାଦ୍ୟସାମଗ୍ରୀ ବଳି ପଡ଼ିଲା । ଶିବାଜୀ ଆଶ୍ଚର୍ଯ୍ୟ ହୋଇଗଲେ । ଭକ୍ତିଭରେ ତାଙ୍କୁ ପ୍ରଣତି ଜଣାଇଲେ । ତାଙ୍କର ରାଜ୍ୟରେ ସନ୍ଥ ତୁକାରାମଙ୍କ ପରି ସିଦ୍ଧପୁରୁଷ ଥିବାରୁ ସେ ନିଜକୁ ଧନ୍ୟ ମନେକଲେ । ସନ୍ଥ ତୁକାରାମଙ୍କ ମହିମା ଚାରିଆଡ଼େ ବିଜୁଳି ବେଗରେ ମାଡ଼ିଗଲା ।

*ମହୁରୁଣ୍ଡି, ଖପ୍ରାଖୋଲ, ବଲାଙ୍ଗିର- ୭୬୭୦୨୮*




## କୋଇଲି

ଶ୍ରୀ ନଗେନ୍ଦ୍ରନାଥ ମହାନ୍ତି

ବସନ୍ତର ଆଗମନେ          କିଶଳୟ ଚୂତ ବନେ
କୋଇଲିଟି କୁହୁ ସ୍ୱନେ କରେ ବିହାର
ରୂପ ସିନା ତାର କୃଷ୍ଣ          ଆନନ୍ଦେ ମୋହଇ କୃଷ୍ଣ
ପାଦପ ପଲ୍ଲବ କୋଳେ ଖେଳା ତାହାର ।
କ୍ଷୁଦ୍ର ସିନା ତାର ରୂପ          ଗୁଣ ତାର ଅପରୂପ
ମଧୁର ସଂଗୀତ ସଦା କରେ ସେ ଗାନ
ସୁମଧୁର କଣ୍ଠ ସ୍ୱନେ          ମୋହେ ସେଇ ସର୍ବଜନେ
ସୃଷ୍ଟିକର୍ତ୍ତାଙ୍କର ସେହି ମହତ ଦାନ ।
ମନ୍ଦମଧୁ ମଳୟରେ          କୋଇଲିର ମଧୁ ସ୍ୱନେ
ଉଚ୍ଚାଟନ କରେ ମୋର ତନୁ ଓ ମନ
ସତେ ଅବା ଆତ୍ମା ମୋର          ନିତ୍ୟରେ କରେ ବିହାର
ମନ ଅଳୀକରେ ଆନନ୍ଦରେ ଗୁଞ୍ଜନ
ପିକର ପଞ୍ଚମ ତାନେ          ରାଧାକୃଷ୍ଣ ପ୍ରେମ ଗାନେ
ପରମପୁରୁଷ ପଦେ ହେବି ମୁଁ ଲୀନ ।

*ପ୍ଲଟ୍ ନମ୍ବର- ୩୬୫/୫୬୦, ପାଇକ ନଗର, ବରମୁଣ୍ଡା, ଭୁବନେଶ୍ୱର*

# ବୃହତ୍‌କାୟ ପ୍ରବାଳ ପ୍ରାଚୀର

## (Great Barrier Reef)

ଡାକ୍ତର ନିମାଇଁ ଚରଣ ପରିଜା

ମହାକାୟ ପ୍ରବାଳ ପ୍ରାଚୀର ଅଷ୍ଟ୍ରେଲିଆର ଉତ୍ତର-ପୂର୍ବ ଉପକୂଳରେ ଏକ ସୁସ୍ପଷ୍ଟ ବିଭାଜନରେଖା ଭାବେ ଅବସ୍ଥିତ । ଏହା ଏତେ ବିରାଟ ଯେ ଚନ୍ଦ୍ରପୃଷ୍ଠରୁ ମଧ୍ୟ ଏହା ଦେଖାଯାଏ । ଏହାର ଲମ୍ବ ହେଉଛି ୨୩୦୦ କିଲୋମିଟର । ଏହା ତୀକ୍ଷ୍ଣ ପଥରରେ ଗଠିତ ଏକ ଲମ୍ବା ଦଉଡ଼ି ଭଳି ଦେଖାଯାଏ; କିନ୍ତୁ ବାସ୍ତବ କ୍ଷେତ୍ରରେ ନିୟୁତ ନିୟୁତ ବର୍ଷ ଧରି କ୍ଷୁଦ୍ର ଜୀବ ଦ୍ୱାରା ଏହା ଗଠିତ ।

ଏହାର କ୍ଷେତ୍ରଫଳ ୩୪୪,୪୦୦ ବର୍ଗ କିଲୋମିଟର । ଏହି ପ୍ରାଚୀର ଅଷ୍ଟ୍ରେଲିଆ ମହାଦେଶର କୁଇନ୍ସଲାଣ୍ଡ ଉପକୂଳ କୋରାଲ ସାଗରରେ ଅବସ୍ଥିତ । ୧୯୮୧ ରେ ଏହାକୁ 'ୱାର୍ଲଡ ହେରିଟେଜ ସାଇଟ୍' ଭାବେ ଘୋଷଣା କରାଯାଇଛି । ଏହି ପ୍ରାଚୀରକୁ ମହାକାୟ ପ୍ରବାଳ ପ୍ରାଚୀର ସାମୁଦ୍ରିକ ପାର୍କ କେତେକାଂଶରେ ସୁରକ୍ଷିତ କରିପାରିଛି । ଫଳରେ ଏହା ଉପରେ ମାନବୀୟ ପ୍ରଭାବକୁ ରୋକାଯାଇପାରିଛି । ବିଶେଷକରି ମାଛ ଧରିବା ଓ ଭ୍ରମଣକାରୀମାନଙ୍କ ପ୍ରଭାବରୁ ଏହାକୁ ରକ୍ଷା କରିବାର ପ୍ରୟାସ ଜାରି ରହିଛି ।

ପ୍ରବାଳ ପ୍ରାଚୀରର ଗଠନ ଅନେକ ସାମୁଦ୍ରିକ ଜୀବକୁ ନେଇ ହୋଇଛି । ଏହି ସାମୁଦ୍ରିକ ଜୀବମାନେ କଠିନ ଚକ୍ ଖଡ଼ି ପରି ଧଳା ପଦାର୍ଥରେ ଗଠିତ । ଏଗୁଡ଼ିକ ନିର୍ମଳ, ଲବଣଯୁକ୍ତ ପାଣିରେ ବଞ୍ଚନ୍ତି ଏବଂ ପ୍ରାୟ ୧୮ ଡିଗ୍ରୀ ସେଣ୍ଟିଗ୍ରେଡ୍ ଥଣ୍ଡାରେ ବଞ୍ଚିଥା'ନ୍ତି । ତା' ତଳକୁ

ସେମାନେ ପ୍ରାୟ ବଞ୍ଚନ୍ତି ନାହିଁ । ଅବଶ୍ୟ କେତେକ କୋରାଲ ମେରୁ ଅଞ୍ଚଳ ପାଣିରେ ମଧ୍ୟ ବଞ୍ଚି ରହନ୍ତି । ଏମାନେ ବିଷୁବମଣ୍ଡଳୀୟ ଅଞ୍ଚଳରେ ଅଧିକ ମାତ୍ରାରେ ବଞ୍ଚି ରହନ୍ତି, ବିଶେଷକରି ଯେଉଁଠାରେ ସୂର୍ଯ୍ୟରଶ୍ମି ସ୍ୱଚ୍ଛ ସମୁଦ୍ରପାଣି ଭେଦ କରିପାରିଥାଏ । ଆଣ୍ଡାମାନ ଦ୍ୱୀପପୁଞ୍ଜ, ଲାକ୍ଷାଦ୍ୱୀପ ଓ ମରିସସ ଦ୍ୱୀପରେ ଏପରି ପ୍ରବାଳ ପ୍ରାଚୀରସମୂହ ଦେଖିବାକୁ ମିଳେ ।

ଏହି ପ୍ରବାଳ ସ୍ଥଳଭାଗରେ ଜୀବଙ୍କଠାରୁ ସଂପୂର୍ଣ୍ଣ ଅଲଗା । ସେମାନେ କେବଳ ଗୋଟିଏ ସ୍ଥାନରେ ବଞ୍ଚି ରହନ୍ତି । କ୍ଷୁଦ୍ର ସାମୁଦ୍ରିକ ଜୀବ ଓ ବୃକ୍ଷ ଖାଇ ବଢ଼ନ୍ତି, ବିଶେଷକରି ସମୁଦ୍ରରେ ଭାସୁଥିବା ପ୍ଲାଙ୍କଟନ୍ ଖାଇ ବଞ୍ଚନ୍ତି । କେତେକ ପ୍ରବାଳ ଏକତ୍ର ଭାବେ ସଂଗଠିତ ହୋଇ ବଞ୍ଚନ୍ତି ଓ ଅନ୍ୟ କେତେକ ଏକା ଏକା ବଞ୍ଚିଥା'ନ୍ତି । ପ୍ରତ୍ୟେକ ପ୍ରବାଳ ସେମାନଙ୍କ ଶରୀରରୁ କେତେକ ଧଳା ଚକ୍ ପରି ଅସ୍ଥିପିଞ୍ଜରା ନିଃସୃତ କରିଥା'ନ୍ତି, ଯାହାଦ୍ୱାରା ପ୍ରବାଳର ବୃଦ୍ଧି ଘଟେ । ନୂଆ ନୂଆ ଅସ୍ଥି ପିଞ୍ଜରା ପୁରୁଣା ଉପରେ ଜମିଯା'ନ୍ତି, ଫଳରେ ବୃହତ୍‌କାୟ ଧଳା ପାହାଡ଼ ଗଠିତ ହୋଇଯାଏ । ଏହାର ଛୋଟବଡ଼ କଲୋନୀମାନ ରଙ୍ଗ ଓ ଆକାରରେ ସମାନ ନ ଥାଏ । କେତେକ ଗମ୍ବୁଜ ପରି ଓ ଆଉ କେତେକ ପଙ୍ଖା ଭଳି । କେତେକ ମୃଗର ଶିଙ୍ଗ ଭଳି ତ ଅନେକ ପଥରର ଫୁଲ ଭଳି ଦେଖାଯାଏ ।

ବୃହତ୍ ପ୍ରବାଳ ପ୍ରାଚୀର ବୁଡ଼ାଳିମାନଙ୍କ ପାଇଁ ବେଶ୍ କୌତୂହଳପ୍ରଦ ହୋଇଥାଏ । ଦିନବେଳା ଏହା ଏକପ୍ରକାର ସୁନ୍ଦର ରଙ୍ଗବେରଙ୍ଗର ପାଣିରେ ଥିବା ଜଙ୍ଗଲ ଭଳି ଦିଶେ । ରାତିରେ ଟର୍ଚ୍ଚ ଆଲୋକରେ ଏହା ବେଶ୍ ଚିତ୍ତାକର୍ଷକ ଦୃଶ୍ୟ ପ୍ରଦର୍ଶିତ କରେ । ଏହା ବ୍ୟତୀତ ଏହାର ଅନେକ ନରମ ଅଂଶ ବା ଶାଖାପ୍ରଶାଖା ଲମ୍ବିଯାଇ ଖାଦ୍ୟ ଖୋଜିବାରେ ଲାଗିଥିବାର ଦେଖାଯାଏ । ରାତିରେ ପ୍ରବାଳମାନେ ତାଙ୍କର ଖାଦ୍ୟ ଅନ୍ୱେଷଣ କରିବାରେ ଲାଗିଥା'ନ୍ତି ଓ ଖାଦ୍ୟ ଆହରଣ ମଧ୍ୟ କରନ୍ତି ।

ବୃହତ୍ ପ୍ରବାଳ ପ୍ରାଚୀର ଭିତରେ ଅଜସ୍ର କ୍ଷୁଦ୍ର କ୍ଷୁଦ୍ର ଜୀବ ଓ ବୃକ୍ଷମାନ ଜମି ରହି ବଞ୍ଚିଥା'ନ୍ତି । ଏମାନେ ପ୍ରବାଳ ରଙ୍ଗ ସହିତ ବେଶ୍ ମିଶିଯା'ନ୍ତି । ଏମାନଙ୍କ ଭିତରେ ଥା'ନ୍ତି ଅନେକ ପ୍ରକାର ପ୍ରଜାପତି ଓ ଆଞ୍ଜୋଲା ମାଛ, ଶୁଆମାଛ ଓ ଆଉ କେତେକ ଶୁଆ ପକ୍ଷୀର ଥଣ୍ଟ ଭଳି ଜୀବମାନ । କେତେକ ସିଲଭର ସ୍କାର୍ଟସ ଓ ବ୍ୟାଟ୍ ମାଛ ମଧ୍ୟ ଏଥିରେ ଯୋଡ଼ି ହୋଇ ରହନ୍ତି । ଏଥିରେ ଆହୁରି ଥା'ନ୍ତି ଅନେକ ଗେଣ୍ଡାଜାତୀୟ ଜୀବ । ଏଥିରେ କେତେକ ବେଶ୍ ବଡ଼ ଓ ଆଉ କେତେକଙ୍କ ଶରୀର ଗୋଜିଆ ପିନ୍‌ରେ ଭରପୂର । ପ୍ରବାଳ ପ୍ରାଚୀରରେ ଥା'ନ୍ତି ଅନେକ ସାମୁଦ୍ରିକ ଦଳ ଓ ଏଗୁଡ଼ିକ ପ୍ରାଣୀ ଓ ଉଦ୍ଭିଦ ପାଇଁ ବେଶ୍ ଖାଦ୍ୟ ଯୋଗାଇଥାଏ ।

ପ୍ରବାଳ ପ୍ରାଚୀର କେବଳ ଜୀବବିଜ୍ଞାନର ସନ୍ତୁଳନକୁ ଉତ୍ତମ ଭାବେ ରକ୍ଷା କରେ ତା' ନୁହେଁ; ବରଂ ନୂଆ ଜୀବନ ସୃଷ୍ଟି କରିବାରେ ସହାୟକ ହୋଇଥାଏ । ଅନୁସନ୍ଧାନରୁ ଜଣାପଡ଼ିଛି ଯେ, ଜୀବାଶ୍ମ ଜୀବ, ଯେଉଁମାନେ କି ସମୁଦ୍ରର ତଳଅଂଶରେ ରହିଥା'ନ୍ତି; ସେମାନେ ମଧ୍ୟ ପ୍ରବାଳ ପ୍ରାଚୀର ଗଠନରେ ସାହାଯ୍ୟ କରିଥା'ନ୍ତି । ଏହା ୫୦୦ ନିୟୁତ ବର୍ଷ ତଳର କାମ୍ବିୟାନ୍ ସମୟରୁ ହୋଇଆସୁଛି । ଆହୁରି ଅନୁସନ୍ଧାନରୁ ଜଣାପଡ଼ିଛି– ଏଇ ପ୍ରବାଳ ପ୍ରାଚୀରକୁ ରକ୍ଷା କରିବା ନିତ୍ୟାନ୍ତ ଆବଶ୍ୟକ । ଏହା ଯଦି ନ ହୁଏ, ତେବେ ସାମୁଦ୍ରିକ ପରିବେଶରେ ବିରାଟ ବିଭ୍ରାଟ ଦେଖାଦେବ ।

ବାୟୁମଣ୍ଡଳରେ ବଢୁଥିବା କାର୍ବନ ଡାଇଅକ୍‌ସାଇଡ୍ ପ୍ରବାଳ ପ୍ରାଚୀର ପ୍ରତି କ୍ଷତି ପହଞ୍ଚାଏ । ଏହାର ସୁରକ୍ଷା ନ କଲେ ସାମୁଦ୍ରିକ ଜୀବନଚକ୍ରରେ ପ୍ରତିବନ୍ଧକ

ସୃଷ୍ଟିହେବ । ପରୀକ୍ଷାନିରୀକ୍ଷାରୁ ଜଣାଯାଏ– ୧୯୮୫ ମସିହାରୁ ପ୍ରବାଳ ପ୍ରାଚୀରର କ୍ଷୟକ୍ଷତି ଆରମ୍ଭ ହୋଇଛି ଓ ୨୦୧୨ ସୁଦ୍ଧା ପ୍ରାୟ ଏହାର ୫୦ ଶତାଂଶ ନଷ୍ଟ ହୋଇଗଲାଣି । କାରଣ ହେଉଛି ଏହି ଅଞ୍ଚଳରେ ମାଛ ମାରିବା, ଭ୍ରମଣକାରୀଙ୍କର ବୁଲାବୁଲି, ପରିବେଶର ପରିବର୍ତ୍ତନ ଓ ରାସାୟନିକ ଶୋଧନ ସାଙ୍ଗକୁ ଷ୍ଟାର୍‌ମାଛମାନଙ୍କର ଅଧିକ ଗତାଗତ ଏହାର କ୍ଷୟକୁ ତ୍ୱରାନ୍ୱିତ କରୁଛି ।

ବୃହତ ପ୍ରବାଳ ପ୍ରାଚୀର କଥା ବହୁ ଦିନରୁ ଅଷ୍ଟ୍ରେଲିଆର ଆଦିମ ଅଧିବାସୀମାନଙ୍କୁ ଜଣାଥିଲା । ଏହା ସେମାନଙ୍କର ସମ୍ମିଳିତ ସଂସ୍କୃତି ଓ ଆଧ୍ୟାତ୍ମିକତାର ସଂକେତ ବହନ କରେ । ଏହା ପରିଭ୍ରମଣକାରୀଙ୍କର ବେଶ୍ ଆକର୍ଷଣୀୟ ଓ ଜନପ୍ରିୟ ସ୍ଥଳ । ଏଥିରୁ ସ୍ଥାନୀୟ ଲୋକମାନେ ପ୍ରାୟ ୩ ବିଲିୟନ ଡଲାର ବର୍ଷକୁ ଆୟ କରିଥା'ନ୍ତି ।

ତେଣୁ ଆଜି ସେନାବାହିନୀ ଏହି ପ୍ରବାଳ ପ୍ରାଚୀରକୁ ରକ୍ଷା କରିବାକୁ ଏକ ନୂତନ ପନ୍ଥା ଆବିଷ୍କାର କରିଛି । ବାଇସନ୍ ବ୍ଲୁ ନାମକ ଏକ ଯନ୍ତ୍ର ଆବିଷ୍କାର କରାଯାଇଛି । ଏହା ପ୍ରବାଳ ପ୍ରାଚୀରକୁ ସମୁଦ୍ର ପ୍ରଦୂଷଣ ଦାଉରୁ ରକ୍ଷା କରିବ ଏବଂ ସମୁଦ୍ରକୁ ପ୍ରଦୂଷଣମୁକ୍ତ କରିବ । ତା' ନ ହେଲେ ଏହି ମୂଲ୍ୟବାନ ସଜୀବ ପଦାର୍ଥଟି ଲୁପ୍ତ ହୋଇଯାଇପାରେ । ଏଥିପ୍ରତି ସଜାଗ ହେବାକୁ ଜନସାଧାରଣଙ୍କୁ, ବିଶେଷକରି ସମୁଦ୍ରତଟବାସୀ ଲୋକମାନଙ୍କୁ ସଚେତନ କରାଯାଉଛି ।

ବିଶ୍ୱ ଉଷ୍ଣତା ବୃଦ୍ଧି ଓ ଅମ୍ଳଯୁକ୍ତ ପରିବେଶ ସମୁଦ୍ର ପତନରୁ ବୃଦ୍ଧିକୁ ପ୍ରଭାବିତ କରୁଛି ଓ ମହାସାଗରର ସୁସ୍ଥତା ଓ ସ୍ୱଚ୍ଛତାକୁ କ୍ଷତି ପହଞ୍ଚାଉଛି । ଏହାରି ଫଳରେ ଅନେକ ସମୁଦ୍ରରେ ପ୍ରବାଳ ପ୍ରାଚୀର ଓ କେତେକ ସାମୁଦ୍ରିକ ଜୀବ ନଷ୍ଟ ହେଉଥିବାର ଜଣାଯାଏ । ଯାହା ଜଣାଯାଉଛି, ୨୫ ଶତାଂଶ ସାମୁଦ୍ରିକ ଜୀବ ପ୍ରବାଳ ପ୍ରାଚୀର ଉପରେ ନିର୍ଭର କରି ବଞ୍ଚିଥା'ନ୍ତି । ଏହା ଏକପ୍ରକାର ପ୍ରାକୃତିକ ପ୍ରତିବନ୍ଧକ ଭାବେ ତଟବାସୀଙ୍କୁ ସୁରକ୍ଷା ଦେଇଥାଏ । ସେଥିରୁ ଅନେକ ପ୍ରକାର ପ୍ରୋଟିନ୍ ମଧ୍ୟ ମିଳିଥାଏ । ଏଥିରୁ ମଧ୍ୟ ଅନେକ ଜୀବନରକ୍ଷାକାରୀ ଔଷଧ ପ୍ରସ୍ତୁତ ହୁଏ, ଯଥା– ଏଡସ୍ ରୋଗର ଚିକିତ୍ସା ପାଇଁ ମେଡିସିନ୍ ଏ.ଜେଡ୍.ଟି. (A.Z.T.) ଇତ୍ୟାଦି । ତେଣୁ ଏହିପ୍ରକାର ଉପକାରୀ ପ୍ରବାଳ ପ୍ରାଚୀରକୁ ରକ୍ଷା କରିବାକୁ ଓ ନଷ୍ଟ ହେଉଥିବା ଅଂଶକୁ ପୁନଃସ୍ଥାପିତ କରିବାକୁ ପ୍ରୟାସ ଜାରି କରାଯାଇଛି ।

ନିକଟରେ ଇଜ୍‌ରାଇଲ୍ ଓ ଜାପାନ ସରକାର 'କୋରାଲ ଲାବୋରେଟୋରୀ ଗାର୍ଡେନ୍' ପ୍ରତିଷ୍ଠା କରି ସେଥିରେ ପ୍ରବାଳ ଚାଷ କରୁଛନ୍ତି ଓ ପ୍ରବାଳ ପ୍ରାଚୀରର କ୍ଷୟ ଅଂଶରେ ଏହାକୁ ପ୍ରତିରୋପଣ କରିବାରେ କ୍ଷମ ହେଉଛନ୍ତି । ଏହାଦ୍ୱାରା କ୍ଷତି ହୋଇଥିବା ପ୍ରବାଳ ପ୍ରାଚୀର ପୁନଃଜୀବିତ ହୋଇ ସାମୁଦ୍ରିକ ପରିବେଶର ସୁରକ୍ଷା କରିପାରୁଛି ।

ପ୍ରଫେସର ବରୁଜ କିଙ୍କେଭିନ୍ ଓ ଜାପାନର ଡକ୍ଟର ମାକଟା ଓମାରି ପ୍ରଭୃତ ଭୂମିକା ଗ୍ରହଣ କରି 'କୋରାଲ ଗାର୍ଡେନ୍' ସ୍ଥାପନା କରି କାର୍ଯ୍ୟ କରି ଚାଲିଛନ୍ତି । ଏହାଦ୍ୱାରା ପରିବେଶର ସୁରକ୍ଷାକୁ ସେମାନେ ତ୍ୱରାନ୍ୱିତ କରିବେ ଓ ପ୍ରବାଳ ପ୍ରାଚୀରକୁ ସୁରକ୍ଷା ଦେଇପାରିବେ ବୋଲି ଆଶାପୋଷଣ କରିଛନ୍ତି ।

*ଅରୁଣୋଦୟ ନଗର, କଟକ- ୧୨*



# ମାଆ ତାଙ୍କ ଭୁଲ୍ ବୁଝିଲେ

ଡକ୍ଟର ସୁରେନ୍ଦ୍ରନାଥ ତ୍ରିପାଠୀ

ବୀରେନ୍ଦ୍ରର ବାପା ଉପେନ୍ଦ୍ରବାବୁ କଲିକତାରେ ଚାକିରି କରନ୍ତି । ଘରେ ମାଆ ଯଶୋଦା ଓ ସେ । ବଡ଼ବାପାଙ୍କ ପୁଅ ସମରେନ୍ଦ୍ର ତା'ରି ବୟସର । ବଡ଼ବାପା ଯାଦବେନ୍ଦ୍ର ଓ ବଡ଼ମାଆ ବସୁମତୀଙ୍କ ସହ ସମରେନ୍ଦ୍ର ରହୁଥାଏ । ତା' ଭଉଣୀ ମାଧବୀ ବିବାହ କରି ଶାଶୂଘରେ ସଂସାର କରୁଥାଏ । ପ୍ରତିବର୍ଷ ବିଭିନ୍ନ ପର୍ବପର୍ବାଣିରେ ସେ ତା' ପିଲାପିଲିଙ୍କୁ ନେଇ ବାପଘରେ ସପ୍ତାହେ, ପକ୍ଷେ ରହିଯାଏ ।

ଉପେନ୍ଦ୍ରବାବୁ ବର୍ଷକୁ ରଜରେ ପାଞ୍ଚଦିନ ଓ ଦଶହରାରେ ପାଞ୍ଚଦିନ —ଏମିତି ଦଶଦିନ ଘରେ ଖୁସିରେ ବିତାଇ ଯାଆନ୍ତି କଲିକତା । ସେହି ଦଶଦିନ ବୀରେନ୍ଦ୍ର ବଡ଼ ଆନନ୍ଦରେ ବାପାଙ୍କ ସହ କାଟିଦିଏ, ବାପା ସମରେନ୍ଦ୍ର ପାଇଁ ବି ତା'ର ମନପସନ୍ଦର ଜିନିଷ କିଣିଦିଅନ୍ତି ।

ପ୍ରତିବର୍ଷ ପରି ସେ ବର୍ଷ ମଧ୍ୟ ରଜ ଆସିଲା । ଗାଁ ଗହଳିରୁ ଆରମ୍ଭ କରି ସହରବଜାର ଯାଏ ରଜମଉଜ ଚାଲିଲା । ଘରେ ଘରେ ଆନନ୍ଦର ଜୁଆର । ଉପେନ୍ଦ୍ରବାବୁ ସଜବାଜ ଦିନ ବଡ଼ିସକାଳୁ ଆସି ପହଞ୍ଚିଲେ । ଘରର ସମସ୍ତଙ୍କ ପାଇଁ ସେ ଲୁଗାପଟା, ଖଜାମିଠା ଆଣିଥା'ନ୍ତି । ସେତେବେଳକୁ ଦି' ଭାଇଯାକ ନିଦରେ ଅଚେତନ । ସେମାନଙ୍କୁ ଉଠାଇ ଉପେନ୍ଦ୍ରବାବୁ ନୂଆ ଜାମା ଓ ମିଠା ପ୍ୟାକେଟ୍ ଧରାଇଦେଲେ । ପିଲାଦିହେଁ ଆନନ୍ଦରେ ଡିଆଁ ମାରିଲେ । ସେମାନଙ୍କ ଖୁସି ଦେଖି ଉପେନ୍ଦ୍ରବାବୁ ଆନନ୍ଦିତ ହେଉଥା'ନ୍ତି । ବଡ଼ଭାଇ ଓ ଭାଉଜଙ୍କୁ ସେମାନଙ୍କ ନୂତନ ବସ୍ତ୍ର ଓ ଘରକରଣା ଚିଜମାନ ଦେଲେ । ପତ୍ନୀଙ୍କୁ ତାଙ୍କ ବରାଦିଆ ଜିନିଷ ଧରାଇଲେ । କଲିକତିଆ ଘରକରଣା ଦ୍ରବ୍ୟରେ ଘର ଉଜ୍ଜ୍ୱଳି ଉଠିଲା ।

ପିଲାଦୁହେଁ ପହିଲିରଜରେ ଭୋର୍‌ରୁ ଉଠି ନୂଆ ଜାମା ପିନ୍ଧି ସଜବାଜ ହୋଇ ପୋଡ଼ପିଠା ଖାଇ ବାଉଁଶ ଦୋଳି ଖେଳିବାକୁ ବାହାରିଗଲେ । ଉପେନ୍ଦ୍ରବାବୁ ମାଂସ ଆଣି ରୋଷଘରେ ଦେଇସାରିଥା'ନ୍ତି । ଦି' ଯାଆ କାମରେ ଲାଗିଥା'ନ୍ତି । ଝିଆରୀ ମାଧବୀ ମଧ୍ୟ ତା' ପିଲାଝିଲା ଧରି ଦାଦାଙ୍କ ନିମନ୍ତ୍ରଣରେ ଆସିସାରିଛି । ଯଦିଓ ଦୁଇ ଭାଇ ଭିନ୍ନେ; କିନ୍ତୁ ପର୍ବପର୍ବାଣିରେ ଉପେନ୍ଦ୍ରବାବୁ ଦୁଇଘରକୁ ଏକ କରିଦିଅନ୍ତି । ତାଙ୍କୁ ବଡ଼ଭାଇ ଜବରଦସ୍ତ ଭିନ୍ନେ କରିଦେଇଛନ୍ତି ।

ସେଦିନ ଗାଁ କୋଠ ପୋଖରୀରୁ ମାଛମରା ହେଉଥାଏ । ଯାଦବେନ୍ଦ୍ର ଓ ଉପେନ୍ଦ୍ର ଦି'ଭାଇ ଅନ୍ୟମାନଙ୍କ ସହ ପଶା ଖେଳୁଥା'ନ୍ତି । ସମରେନ୍ଦ୍ର ଓ ବୀରେନ୍ଦ୍ର ଯାଇ ସେମାନଙ୍କ ଭାଗମାଛତକ ନେଇ ଘରକୁ ଆସିଲେ । କାଲିକୁ ମାଛଝୋଳ ହେବ । ମାଆ ଓ ବଡ଼ମାଆ ଛାଣି ରଖିଦେବେ । ରଜପାନ ଖିଆ, ପିଠାମିଠା ଖିଆ, ଦୋଳିରେ ଝୁଲା ଓ ଗାଁ ବୁଲା ମଧ୍ୟରେ ପ୍ରଥମ ରଜଟି ସରିଲା । ମାଆ ସନ୍ଧ୍ୟା ହେବା ପୂର୍ବରୁ ପରମ୍ପରାକୁ ସମ୍ମାନ ଦେଇ ଖିଆପିଆ କାମ ବଢ଼ାଇଦେଲେ । ବିଲୁଆ ଭୁକିବା ଆଗରୁ ଖିଆ ସାରିନେବା— ଏ ପରମ୍ପରା କେଉଁ ଆବହମାନ କାଳରୁ ଗଢ଼ିଆସିଛି ।

ମଝି ରଜଦିନ ସଜବାଜ ହୋଇ ଦୁଇଭାଇ ବୁଢ଼ା ଚକୁଳି ଖାଇ ଦୋଳି ଖେଳିବାକୁ ବାହାରିଗଲେ । ଗାଧୁଆବେଳେ ଘରକୁ ଫେରି ମାଛଝୋଳ, ସଜନା ଛୁଇଁ ଭଜା, ନଡ଼ିଆ ବଡ଼ିଦିଆ ଲେଉଟିଆ ଶାଗ ଖରଡ଼ାକୁ ସପୁରୀ

ଖଟା ଓ ପାଚିଲା ଆମ୍ବ ଖାଇ ପୁଣି ଚିଲଭଳିଆ ବାହାରିଗଲେ । ଏ ତିନିଦିନ ତ ପୋଥିପାଠ ଛୁଇଁବାର ନ ଥାଏ । ଖେଳାବୁଲା ମଉଜ ମଜଲିସ୍ ଯେତେ କରୁଛ କର । ମନା କରିବାକୁ କେହି ନାହିଁ । ଗାଁ ପଡ଼ିଆରେ ତିନିଦିନ ବିଭିନ୍ନ ଗାଁ'ରୁ ଆସିଥିବା ଭେଣ୍ଡିଆଦଳଙ୍କ ମଧ୍ୟରେ ବାଗୁଡ଼ି ଖେଳ ହୁଏ । ଯେଉଁ ଦଳ ଜିତେ, ସେ ପୁରସ୍କାର ପାଏ । ନାଗରା ଶବ୍ଦରେ ଗାଁ କମ୍ପେ । ଗାଁ'ରେ ବାଦୀପାଲା ଓ ପରେ ପରେ ନାଟ-ଯାତ୍ରା ହେବାପରି ଏ ବାଗୁଡ଼ିଖେଳଟା ବି ଜୁଟିଯାଇଛି କେଉଁ କାଳରୁ । ଶେଷ ରଜରେ ସରପଞ୍ଚ ବିଜୟୀ ଦଳଙ୍କୁ ପୁରସ୍କାର ସହ ଭଲ ଖାଇବାକୁ ଦିଅନ୍ତି । ଖୁବ୍ ମଜା ହୁଏ ।

ଆଜି ଶେଷ ରଜ । ବାଗୁଡ଼ିଖେଳର ମଜା ସମସ୍ତେ ନେଉଥା'ନ୍ତି । ମଧୁପୁରର ଯୁବକଦଳ ବଳରାମପୁର ଯୁବଦଳଙ୍କୁ ହରାଇ ପୁରସ୍କାର ନେଇଗଲେ । ତା'ପରେ ଗାଁ'ର ଫଳତୋଟାରୁ ଫଳ ତୋଳାଯାଇ ବଣ୍ଟାଯିବାର ଘୋଷଣା ଶୁଣି ସମରେନ୍ଦ୍ର ଓ ବୀରେନ୍ଦ୍ର ଘରୁ ବ୍ୟାଗ୍ ଓ ବଡ଼ କଂସା ଗୋଟାଏ ଗୋଟାଏ ନେଇ ଦୌଡ଼ିଲେ । ଘର ପିଛା ଆମ୍ବ ଚାରି କିଲୋ, ସପୁରି ଚାରିଟା ଓ ଜାମୁଡୋଳ କିଲେ ଲେଖାଏଁ ପଡ଼ିଲା । ବଡ଼ ବଡ଼ ପଣସ କୋଡ଼ିଏଟା ପାଚି ମହମହ ବାସୁଥାଏ । ତେଣୁ ସବୁବର୍ଷ ପରି ସେଇଠି ପଣସ ଭାଙ୍ଗି ଘରପିଛା କଂସାଏ କରି ଫୁଟ ଦିଆଯିବ । ବୀରେନ୍ଦ୍ର ଓ ସମରେନ୍ଦ୍ର ଅନ୍ୟାନ୍ୟ ଫଳ ସହ ପଣସ କଂସାଏ ଧରି ଘରମୁହାଁ ହେଲେ ।

ବାଟରେ ସମରେନ୍ଦ୍ରଙ୍କୁ ପରିସ୍ରା ଲାଗିବାରୁ ସେ ରାମ ମଉସାଙ୍କ ସାଇକେଲରେ ବସି ଘରକୁ ଆସିଲା । ବୀରେନ୍ଦ୍ର ଭାବିଲା, ଏଣେ ବଗିଚାରୁ ଜାମୁକୋଳି ତୋଳା ଚାଲିଛି । କଟକୀ ଜାମୁ । ବଡ଼ ସୁଆଦିଆ । ସବୁ ତୋଳା ହେଲାପରେ ଭାଗ ପଡ଼ିବ । ଏଣୁ ପଣସ କଂସା ଓ ଫଳ ବ୍ୟାଗ୍ ଧରି ବୀରେନ୍ଦ୍ର ତୋଟାକୁ ଫେରିଆସିଲା । ତୁଚ୍ଛାଟାରେ ବସିବାକୁ ତାକୁ ଭଲ ଲାଗିଲା ନାହିଁ । ସେ କଂସାକଯାକ ପଣସ ଫୁଟରୁ ମଞ୍ଜିମାନ କାଢ଼ି ସେ ମଞ୍ଜିକୁ ପାଖ ଢିଙ୍କିଆ କଳରେ ଧୋଇ ବ୍ୟାଗ୍‌ରେ ରଖିଲା । ଏ ଭିତରେ ଜାମୁକୋଳି ଘର ପିଛା ଦୁଇ କିଲୋ କରି ଭାଗ ପଡ଼ିଲା । ବୀରେନ୍ଦ୍ର ସବୁତକ ଧରି ଘରେ ପହଞ୍ଚିଲା । ବୋଉ ପାଖରେ ସବୁ ଦ୍ରବ୍ୟ ବାବତ ବାବତ କରି ରଖିଦେଲା ।

ବୋଉ ଦେଖିଲେ ସମର ଆଣିଛି କଂସାଏ ପଣସ, ଆଉ ବୀରୁ ଆଣିଛି ଅଧକଂସାଏ । ବୀରୁ କ'ଣ ବାଟରେ ପଡ଼ିଯାଇ ଅଧକଂସାଏ ପଣସ ନଷ୍ଟ କରିଦେଇଛି ? ବୋଉ ରାଗିଗଲେ । ବୀରୁକୁ ରଜପରା ଦିନରେ ଆଉ ବଡ଼ ଦଣ୍ଡ ଦେବେ କ'ଣ କାନ ଧରି ଠିଆ ହୋଇ ରହିବାକୁ କହି ରୋଷଘରେ କାମରେ ଲାଗିଗଲେ । ଏଣେ ବାପା ଉପେନ୍ଦ୍ର ପଶାଖେଳ ସାରି ଘରେ ପହଞ୍ଚି ଦେଖନ୍ତି ଯେ ବୀରୁ କାନ ଧରି ଠିଆହୋଇଛି । ଆଖିରୁ ଲୁହଧାର ବହିଯାଉଛି । ବୀରେନ୍ଦ୍ର ବି ତା' ଦୋଷ କ'ଣ ବୁଝିପାରୁନି । ଦୋଷ ପାଇଁ ଦଣ୍ଡ ପାଇବାରେ ତା'ର ଆପତ୍ତି ନାହିଁ; କିନ୍ତୁ ଏ ବିନା ଦୋଷରେ... । ଉପେନ୍ଦ୍ରବାବୁ ପତ୍ନୀଙ୍କୁ ଘଟଣା କ'ଣ ପଚାରିଲେ । ବୋଉ କହିଲେ– ବୀର ଏଡୁଟିଏ ହେଲାଣି, ତା'ର ଦାୟିତ୍ୱ ଜ୍ଞାନ ବୋଲି

କିଛି ନାହିଁ । ଦେଖିଲ, ପଣସ କଂସାକରୁ ଅଧେ ବାଟରେ ପକେଇ ଦେଇ ଆସିଛି । ସମରର କଂସାଏ ପଣସ । ଯା' ଦ୍ୱାରା ଖଡ଼ା ସିଝିବନି । ମୋର ପଣସରେ ବଡ଼ ଶ୍ରଦ୍ଧା । ତୋଟାର ଖଜା ପଣସ ଯେମିତି ସୁଆଦିଆ, ସେମିତି ବାସ୍ନା । ଏ ବୀରୁ ଆଜି ମୋ ଆଶା ମାରିଦେଲା ।

ଉପେନ୍ଦ୍ରବାବୁ ଜାଣନ୍ତି ତାଙ୍କ ବୀରୁ ସେମିତି ଭୁଲ୍ କରି ନ ଥିବ । ସେ ତାକୁ କୋଳକୁ ନେଇ ପଚାରିଲେ– ବୀରୁ ! କଥା କ'ଣ ? ତୋର ଅଧକଂସାଏ ଓ ସମରର କଂସାଏ ପଣସର ରହସ୍ୟ କ'ଣ ?

ବୀରୁ ଏବେ ମାଆଙ୍କ ରୋଷ କଥାଟା ବୁଝିଗଲା । ସେ ବାପା ଓ ମାଆଙ୍କୁ ପଣସରୁ ମଞ୍ଜିଗୁଡ଼ିକ କାଢ଼ି ଅଲଗା ବ୍ୟାଗ୍‌ରେ ରଖିଥିବାର ଜଣାଇଲା । ବୀରୁ ମାଆଙ୍କ ବୁଝିବା ପାଇଁ ମଞ୍ଜିତକ ଆଉଥରେ ଧୋଇ କଂସାରେ ରଖି, ତା' ଉପରେ ପଣସ ରଖିବାରୁ କଂସାଟା ପୂରି ଉଠିଲା । ତାହା ଦେଖି ମାଆ ତାଙ୍କ ଭୁଲ୍ ବୁଝିପାରି ଅଯଥା ବୀରୁକୁ ଦଣ୍ଡିତ କରିଥିବାରୁ ଦୁଃଖିତ ହୋଇ ତାକୁ କୋଳକୁ ନେଲେ ।

ଉପେନ୍ଦ୍ରବାବୁ କପୋତୀ କାହାଣୀଟି ଶୁଣାଇ ପୁଅ ସହ ଖାଇବସିଲେ । ଏଣୁ ବୁଝିବିଚାରି କାର୍ଯ୍ୟ ନ କଲେ ଅସୁବିଧା ହୁଏ ବୋଲି ଯଶୋଦା ବୁଝିଗଲେ ।

*ଜବାହର ନବୋଦୟ ବିଦ୍ୟାଳୟ, ଦେବଗଡ଼ – ୭୬୮୧୦୮*

# ଭାରତରେ ପ୍ରଚଳିତ କେତେକ ହିନ୍ଦୁ ପାରମ୍ପରିକ ପ୍ରଥା

ହିନ୍ଦୁ ସ୍ତ୍ରୀ, ଝିଅ ଓ ବୋହୂମାନେ ହାତରେ ଓ ଗୋଡ଼ରେ ମେହେନ୍ଦି ଲଗାନ୍ତି । ଏହି ମେହେନ୍ଦିର ବହୁ ଔଷଧୀୟ ଗୁଣ ରହିଛି । ଝିଅଟିଏ ପାଇଁ ଭବିଷ୍ୟତର ଦାୟିତ୍ୱବୋଧ ଏକ ବୋଝ ସଦୃଶ ହୋଇଥାଏ । ତେଣୁ ତାର ମସ୍ତିଷ୍କ ଭାରାକ୍ରାନ୍ତ ହୋଇଥାଏ । ମେହେନ୍ଦି ଲଗାଇବା ଦ୍ୱାରା ଏହି ଭାରାକ୍ରାନ୍ତ ମସ୍ତିଷ୍କ ହାଲୁକା ହୋଇଥାଏ ଏବଂ ଶରୀରର ସ୍ନାୟୁ ଉତ୍ତେଜିତ ହେବାରୁ ରକ୍ଷା କରେ ।

ଭାରତୀୟ ହିନ୍ଦୁ ପରମ୍ପରାରେ ଝିଅମାନଙ୍କର କାନଫୋଡ଼ା ରୀତି ରହିଛି । ଦାର୍ଶନିକ ଏବଂ ସ୍ୱାସ୍ଥ୍ୟ ବିଶେଷଜ୍ଞଙ୍କ ମତରେ– କାନଫୋଡ଼ା ହେଲେ ମସ୍ତିଷ୍କ ଶକ୍ତିପ୍ରଦ ହୁଏ, ଭାବନାଶକ୍ତି ଉନ୍ନତ ହୁଏ ଏବଂ ସ୍ଥିର ବିଚାରଧାରା ଉତ୍ପନ୍ନ ହୁଏ । ଏହାଦ୍ୱାରା ଝିଅମାନଙ୍କର ଗପିବାର ଶୈଳୀକୁ ବାଧା ଦିଏ ଓ ବ୍ୟବହାର ମାର୍ଜିତ କରାଏ । କାନର ସମସ୍ତ ଅଙ୍ଗକୁ ଅସୁସ୍ଥତାରୁ ରକ୍ଷାକରେ ।

# ବସନ୍ତ ଦେଇଛି ଚିଠି

ଶ୍ରୀ ରାସେଶ୍ୱର ମହାନ୍ତ

ବସନ୍ତ ଦେଇଛି ଚିଠି ମଳୟର ହାତେ
ଆସିବ ବୋଲି ଲେଖିଛି ଫଗୁଣ ପ୍ରଭାତେ ।
ଶୁଣିଥିଲା ଶୀତ ବାଘ ଗାଆଁରେ ପଶିଲା
କନ୍ଦାଇଲା ସଭିଙ୍କୁ ସେ ବିଲବାଡ଼ି ନାଶିଲା ।
ସେହିଦିନୁ ମନ ଦୁଃଖେ ଛୁଟି ପାଇଁ ଭାଳିଲା
ଏତେ ଦିନେ ଦୁଇ ମାସ ଛୁଟି ତାକୁ ମିଳିଲା ।
ବରଷକ ପରେ ଗାଆଁ ଆସୁଛିରେ ବସନ୍ତ
ସଙ୍ଗରେ ଆସିବେ ପୁଣି କେତେ ସାଥୀସଙ୍ଗାତ ।
ମା'ବସୁମତୀ ଶୁଣି ତା' ଆସିବା ଖବର
ସରାଗରେ ସଜାଉଛି ନଜେ ଘର ନବର ।

କଅଁଳିଆ ଆମ୍ବଡାଳ ଚାରିଆଡ଼େ ଖଞ୍ଜୁଛି
ଯୂଈଜାଈ, ମଲ୍ଲୀ, ହେନା କେତେ ଫୁଲେ ରଞ୍ଜୁଛି ।
ନିଆଳି, ଅଶୋକ, ଚମ୍ପା ହସେ ମଧୁମାଳତୀ
ମାଧବୀ, ଗୋଲାପ ଫୁଲ, ଟଗର ଓ ସେବତୀ ।
ବାସନା ଅତର ଛିଞ୍ଚି ମହକାଇ ଆସୁଛି
ଫଗୁଣର ସକାଳକୁ ଚାହିଁକରି ବସୁଛି ।
ବସନ୍ତ ଆସିବ ନେଇ କଷି ଆମ୍ବ ସମ୍ଭାର
ପଣସ କଠା ଆଣିବ ଆଈ ପାଇଁ ବେଭାର ।
ପାଚିଲା କୋଳି, ପଇଡ଼, ଲିଚୁ, ବେଲ ପିଜୁଳି
ଭାଇ-ଭଉଣୀଙ୍କ ପାଇଁ ଆଣିବ ଭଳି ଭଳି ।
ସେ ଦେଶରେ ଯେଉଁ ସବୁ ଫଳ ମାନ ଦେଖିଛି
ମା'ପାଇଁ କିଛି କିଛି ଆଣିବ ସେ ଲେଖିଛି ।
ଅବିର ଗୁଣ୍ଡ ଆଣିବ ସାଙ୍ଗ ମେଳେ ଖେଳିବ
ଭକତିରେ ରାଧା-କୃଷ୍ଣ ଚରଣରେ ବୋଳିବ ।
ସଭିଙ୍କ ପାଇଁ କିଛି କିଛି ଧରି ସିଏ ଆସିବ
ମଧୁର ବଚନେ ସଭିଙ୍କର ମନ ତୋଷିବ ।
ଦୁଇମାସ ପାଇଁ ଗାଁ ଆସିବରେ ବସନ୍ତ
ଜନମ ମାଟି ମମତା ଭୁଲେ କିଏ କହ ତ ?

*ଚମ୍ପୁଆ, କେନ୍ଦୁଝର*

---

## ସଂଗ୍ରହ କରିବାର ନିଶା

- ଇଂଲଣ୍ଡର ମହାରାଣୀ ଏଲିଜାବେଥ ଡାକଟିକେଟ ସଂଗ୍ରହ କରିବାରେ ନିପୁଣା ଥିଲେ । ସେ ୪୫ ଲକ୍ଷ ପାଉଣ୍ଡରୁ ଅଧିକ ମୂଲ୍ୟର ଡାକଟିକେଟ ସଂଗ୍ରହ କରିଥିଲେ ।
- ଜଣେ ପୋଲିସ ଅଫିସରଙ୍କର ଛଅହଜାର ରଙ୍ଗବେରଙ୍ଗୀ ପ୍ରଜାପତି ସଂଗ୍ରହ କରିବାର ସଉକ ଥିଲା ।
- ଅନ୍ୟ ଜଣେ ପୋଲିସ ଅଫିସର ନିଶ ସଂଗ୍ରହ କରିବାରେ ଦକ୍ଷ ଥିଲେ । ସେ ସଂଗ୍ରହ କରିଥିବା ନିଶ ଭିତରେ ସବୁଠାରୁ ଲମ୍ବ ନିଶ ଥିଲା ଦୁଇ ଫୁଟ ।

**--ଶ୍ରୀ ଯୁଗଳ କିଶୋର ଷଡ଼ଙ୍ଗୀ,**

*ନୀଳଚକ୍ର ନଗର, ଟିଟିଲାଗଡ଼ ଜି. ବଲାଙ୍ଗୀର*

# ରଙ୍ଗତରଙ୍ଗ

ଶ୍ରୀ କାଞ୍ଚି ନାରାୟଣ ମହାନ୍ତି

## କାର୍ଟୁନିଷ୍ଟ ସୁଧୀର ତୈଲଙ୍ଗ :

ତାଙ୍କର ଜନ୍ମ ରାଜସ୍ଥାନରେ । ଭାରତବର୍ଷର ଜଣେ ସ୍ୱନାମଧନ୍ୟ ବ୍ୟଙ୍ଗ ଚିତ୍ରଶିଳ୍ପୀ । ନୂଆଦିଲ୍ଲୀର ଲୋଧିରୋଡ୍ ଶ୍ମଶାନଘାଟରେ ତାଙ୍କର ଶେଷକୃତ୍ୟ ସମ୍ପନ୍ନ ହୋଇଛି । ଫେବୃଆରୀ ଛବିଶ ତାରିଖରେ ତାଙ୍କୁ ଛପନ ବର୍ଷ ପୂର୍ଣ୍ଣ ହୋଇଥା'ନ୍ତା । କିଛି ଦିନ ହେବ ସେ ବ୍ରେନ୍‌ଟ୍ୟୁମର ରୋଗରେ ପଡ଼ିଥିଲେ ।

ସୁଧୀର ତୈଲଙ୍ଗ ତାଙ୍କର ଶିକ୍ଷା ଶେଷ ପରେ ଚିତ୍ର କଳାରେ ବିଶେଷ ଜ୍ଞାନ ପାଇଁ ଭାରତବର୍ଷର ବହୁ ଆଦରଣୀୟ ସମ୍ଭ୍ରାନ୍ତ ପତ୍ରିକା 'ଇଲଷ୍ଟ୍ରେଟେଡ୍ ୱିକ୍ଲି'ରେ କାର୍ଟୁନିଷ୍ଟ ଭାବେ ଜୀବିକା ଆରମ୍ଭ କରିଥିଲେ ।




ସେ ଭାରତବର୍ଷ ତଥା ବିଶ୍ୱର ରାଜନେତା ଏବଂ ଅନ୍ୟାନ୍ୟ ବର୍ଗଙ୍କର କାର୍ଟୁନ୍ ଏତେ ଚମତ୍କାର ଭାବରେ ଆଙ୍କୁଥିଲେ, ଯାହା ସବୁରି ପସନ୍ଦ ଥିଲା । ନବେ ଦଶକରେ ସେ 'ନବଭାରତ ଟାଇମସ୍'ରେ ଯୋଗ ଦେଇଥିଲେ । ତାଙ୍କର ହାତର ଅଦ୍ଭୁତ ଯାଦୁ ଏପରି ଥିଲା– ଯେକୌଣସି ଘଟଣା ଓ ସ୍ଥିତିକୁ ନେଇ କାର୍ଟୁନ୍ ପ୍ରସ୍ତୁତ କରିପାରୁଥିଲେ ।

ଆର୍.କେ.ଲଛମନଙ୍କ ପରି ତାଙ୍କର ତୂଳୀର ସ୍ୱତନ୍ତ୍ରତା ଥିଲା । 'ହିନ୍ଦୁସ୍ଥାନ୍ ଟାଇମସ୍', 'ଇଣ୍ଡିଆନ୍ ଏକ୍ସପ୍ରେସ୍, 'ଏସିଆନ୍ ଏଜ୍' ଭଳି ଦୈନିକରେ ତାଙ୍କ ଚିତ୍ର ବିଭିନ୍ନ ସମୟରେ ପାଠକମାନଙ୍କୁ ବିମୋହିତ କରୁଥିଲା ।

ଦେଶ ବା ବିଶ୍ୱର ଯେତେ ବଡ଼ ବ୍ୟକ୍ତି ହୁଅନ୍ତୁ, ସେମାନଙ୍କୁ କାର୍ଟୁନିଷ୍ଟମାନେ ବିଚିତ୍ର ଭାବରେ ଚିତ୍ରିତ କରିପାରନ୍ତି । ଏହା ସେମାନଙ୍କର ଅଖଣ୍ଡ କ୍ଷମତା ।




ହାତ ବୁଲେଇଦେଲେ ସେ ଯେଉଁଭଳି ଜଣେ ବ୍ୟକ୍ତିଙ୍କୁ ବିଦ୍ରୂପାତ୍ମକ ଭାବେ ରଙ୍ଗରେ ପରିବେଷଣ କରିଥାନ୍ତି, ତାହା ଅନ୍ୟମାନଙ୍କୁ ଚିନ୍ତା କରିବାକୁ ପଡ଼ିଥାଏ ।

ଶିଳ୍ପୀମାନେ ଈଶ୍ୱରଙ୍କ ଆଶୀର୍ବାଦଯୁକ୍ତ ଅବଦାନ । ସେଇଥିପାଇଁ ସୁଧୀର ତୈଲଙ୍ଗଙ୍କୁ ୨୦୦୫ ମସିହାରେ 'ପଦ୍ମଶ୍ରୀ' ସମ୍ମାନ ପ୍ରଦାନ କରାଯାଇଥିଲା । ତାଙ୍କ ପାଇଁ ବହୁ ଚିତ୍ରଶିଳ୍ପୀ ତଥା ମଧ୍ୟପ୍ରଦେଶ ମୁଖ୍ୟମନ୍ତ୍ରୀ ଶିବରାଜ ସିଂହ ଶୋକ ପ୍ରକାଶ କରି ବାର୍ତ୍ତା ପ୍ରଦାନ କରିଛନ୍ତି ।



# ଜାଗ୍ ଉଠେ ହମ୍

ପିଲାଦିନର ନାମ ତାଙ୍କର ଥିଲା ଗୀତା ଘୋଷ ରାୟଚୌଧୁରୀ । ତାଙ୍କର ପିତା ଦେବେନ୍ଦ୍ରନାଥ ଘୋଷ ରାୟଚୌଧୁରୀ ଜଣେ ଜମିଦାର ଥିଲେ । ତାଙ୍କର ୧୦ଟି ସନ୍ତାନ ମଧ୍ୟରୁ ଗୀତା ଥିଲେ ଜଣେ । ମା' ଅମୀୟ ଦେବୀ ଓ ଦେବେନ୍ଦ୍ରଙ୍କ ଔରସରୁ ଫରିଦ୍‌ପୁର, ବେଙ୍ଗଲ (ବର୍ତ୍ତମାନର ବଙ୍ଗଳାଦେଶ)ରେ ତାଙ୍କର ଜନ୍ମ, ନଭେମ୍ବର ୨୩, ୧୯୩୦ରେ ।

୧୯୪୦ରେ ତାଙ୍କର ପରିବାରର ସମସ୍ତ ସମ୍ପତ୍ତିକୁ ତ୍ୟାଗ କରି କଲିକତା ଚାଲିଆସିଲେ । ତା'ପରେ ଗୀତା ୧୨ ବର୍ଷ ବୟସରେ ୧୯୪୨ରେ ବମ୍ବେର ଦାଦାର୍‌ଠାରେ ସ୍ଥାୟୀ ବସବାସ ଆରମ୍ଭ କଲେ । ସେଠି ସେ ବେଙ୍ଗଲ ହାଇସ୍କୁଲରେ ପଢ଼ିଲେ । ବିଶିଷ୍ଟ ସଙ୍ଗୀତଜ୍ଞ କେ. ହନୁମାନ ପ୍ରସାଦ ଗୀତାଙ୍କର କଳାକାର ଜୀବନଯାତ୍ରାରେ ମୂଳଦୁଆ ପକାଇବାରେ ପ୍ରମୁଖ ଭୂମିକା ଗ୍ରହଣ କଲେ । ଚଳଚ୍ଚିତ୍ରରେ ସଙ୍ଗୀତ ଗାଇବା ପାଇଁ ତାଙ୍କୁ ପ୍ରସ୍ତୁତ କଲେ ଏବଂ ସୁଯୋଗ ଦେଲେ ମଧ୍ୟ । ଏକ ଧର୍ମସମ୍ବନ୍ଧୀୟ ଚଳଚ୍ଚିତ୍ର 'ଭକ୍ତ ପ୍ରହଲ୍ଲାଦ'ରେ ତାଙ୍କର ସୁନ୍ଦର କଣ୍ଠର ଅୟମାରମ୍ଭ ହେଲା । ସେହି ଚଳଚ୍ଚିତ୍ରରେ କେତେକ ସଙ୍ଗୀତର କେବଳ ଦୁଇଧାଡ଼ି ସେ ଗାଇଲେ । ତାଙ୍କୁ ସେତେବେଳେ ମାତ୍ର ୧୬ ବର୍ଷ ହୋଇଥିଲା । ତାଙ୍କର କଣ୍ଠରେ କି ଯାଦୁ ଥିଲା କେଜାଣି, ସମସ୍ତେ ତାଙ୍କ ସଙ୍ଗୀତର ସ୍ୱରରେ ସମ୍ମୋହିତ ହୋଇଗଲେ—

"ଅବ ଜାନିରେ ପହଚାନିରେ
ଶୁନୋ ଶୁନୋ ବିନ୍‌ତୀ ହମାରୀ
ଶୁନୋ ଶୁନୋ ହରି କି ଲୀଲା
ଜାଗ୍ ଉଠେ ହମ୍ ଜାଗ୍ ଉଠେ ।"

ତା'ପରେ ତାଙ୍କର ମହାର୍ଘ ଯାତ୍ରା ଉନ୍ନତି ପଥରେ ଆଗେଇ ଚାଲିଲା । ସେ ଯେ କୌଣସି ସଙ୍ଗୀତକୁ, ଯେ କୌଣସି ସ୍ୱରରେ ବେଶ୍ ମଧୁର ତଥା ଆକର୍ଷଣୀୟ ଭାବରେ ତନ୍ମୟ ଓ ତଲ୍ଲୀନ ଭାବେ ଗାଇପାରୁଥିଲେ ।

ଦେବଦାସ ଚଳଚ୍ଚିତ୍ରର 'ଆନ୍ ମିଲୋ ଶ୍ୟାମ୍ ସବେରେ' ଇତ୍ୟାଦି ସଙ୍ଗୀତରେ । ଏସ୍.ଡ଼ି.ବର୍ମନ୍ ତାଙ୍କୁ ସଙ୍ଗୀତ ଜଗତରେ ସମ୍ପୂର୍ଣ୍ଣ ବିନିଯୋଗ କରିବାରେ ଲାଗିଲେ । ସୁଜାତା ଚଳଚ୍ଚିତ୍ର, କାଗଜ୍ କେ ଫୁଲ୍ ଇତ୍ୟାଦି ଚଳଚ୍ଚିତ୍ରରେ ତାଙ୍କର ସୁମଧୁର ସ୍ୱରର ଲହରୀ ସମଗ୍ର ସଙ୍ଗୀତ ଜଗତକୁ ଆହ୍ଲାଦିତ କରି ରଖିଲା ।

ସେ 'ବାଜି' ଚଳଚ୍ଚତ୍ରର ସଙ୍ଗୀତ ରେକର୍ଡ଼ିଂ ସମୟରେ ଏହାର ନିର୍ଦ୍ଦେଶକ ଗୁରୁଦତ୍ତଙ୍କୁ ଭେଟିଲେ, ବିବାହ କଲେ ଏବଂ ୧୯୫୫ ମେ ମାସରେ ତାଙ୍କର ୩ଟି ସନ୍ତାନ ଅରୁନ୍, ବରୁନ୍ ଏବଂ ନିନା ଜନ୍ମ ହେଲେ ।

୧୯୫୭ରେ ଚଳଚ୍ଚିତ୍ର 'ଗୌରୀ'ରେ ସେ

ଛବି ଚଳଚ୍ଚିତ୍ର 'ଗୌରୀ'ରେ ଗୀତା ଦତ୍ତ

କଣ୍ଠଦାନ ଓ ଅଭିନୟ ମଧ୍ୟ କଲେ ଗୁରୁଦତ୍ତଙ୍କ ସହିତ । ଏହି ଚଳଚ୍ଚିତ୍ର ଥିଲା ଭାରତର ପ୍ରଥମ ସିନେମାସ୍କୋପ୍‌ର ଚଳଚ୍ଚିତ୍ର ।



ବଙ୍ଗଳା ଚଳଚ୍ଚିତ୍ର 'ବଧୂବରନ୍'ର ଏକ ଦୃଶ୍ୟ

୧୯୬୪ରେ ଗୁରୁଦତ୍ତଙ୍କର ମୃତ୍ୟୁ ପରେ ସେ ଖୁବ୍ ହତାଶ ହୋଇଗଲେ । ତାଙ୍କର ଜୀବନ ଦୁର୍ବିସହ ହୋଇଗଲା । ସେ ସୁଚିତ୍ରା ସେନ୍ ଅଭିନୀତ ବଙ୍ଗଳା ଚଳଚ୍ଚିତ୍ର ହାରାନ୍‌ସୁର୍, ବଧୂବରନ୍, ଅନୁଭବ ଇତ୍ୟାଦିରେ କଣ୍ଠଦାନ କଲେ ।

ତାଙ୍କ ସଙ୍ଗୀତର ଯାଦୁକରୀ ପ୍ରତିଫଳନ ଯେଉଁ ଚଳଚ୍ଚିତ୍ରଗୁଡ଼ିକରେ ହୋଇଥିଲା, ସେଗୁଡ଼ିକ ହେଲା– ଦୋ ଭାଇ, ପ୍ୟାର୍, ବାଜି, ଦେବଦାସ, ପ୍ୟାସା, ସୁଜାତା, କାଗଜ୍ କେ ଫୁଲ୍, ଆର୍ ପାର୍ ,ଉସ୍ତାଦ୍, ଶ୍ରୀମତୀ ୪୨୦ ଇତ୍ୟାଦି ।

ଶେଷରେ ତାଙ୍କର ସୁମଧୁର କଣ୍ଠସ୍ୱରର ଇତି ଘଟିଲା ୧୯୭୨, ଜୁଲାଇ ୨୦ ତାରିଖରେ । ଆଜି ମଧ୍ୟ ତାଙ୍କର ସଙ୍ଗୀତରେ ସେ ଅମର ରହିଛନ୍ତି । ଏବେ ବି ସେ ସଙ୍ଗୀତ ସମସ୍ତଙ୍କୁ ଆନନ୍ଦ ଦିଏ ।

*ଶ୍ରୀବିହାର କଲୋନୀ, ତୁଳସୀପୁର, କଟକ- ୮*




ବାହାଘର ଋତୁ ଚାଲିଛି । ଏଇ ମାର୍ଗଶୀର, ପୌଷ, ମାଘ, ଫାଲଗୁନ ଇତ୍ୟାଦି ୧୨ ମାସରୁ ମଝିରେ ୨/୩ ମାସ ଛାଡ଼ି ବାକି ସବୁ ମାସରେ ପ୍ରାୟ ବାହାଘର ଥାଏ– ଯାହା ମୋର ଧାରଣା । ଏବେ ତ ପ୍ରତ୍ୟେକ ଦିନ ବାହାଘର ଚାଲିଛି ।

ଗାଁ'ଗଣ୍ଡାରେ ବାହାଘର ନିଆରା । ଅବଶ୍ୟ ଏବେ ସହରୀ ସଭ୍ୟତା ପଶିଲାଣି ବାହାଘର ଭିତରେ ।

ସହରୀ ବାହାଘର ଦେଖିଲେ ଆଖି ଝଲସିଯିବ । ଦିଲ୍ଲୀ, ବମ୍ବେ କଥା ଛାଡ଼– ଏଇ କଟକ, ଭୁବନେଶ୍ୱରରେ ବାହାଘର ଦେଖିଲେ ତାଜୁବ୍ ଲାଗେ ।

କେଉଁଠି ବରକନ୍ୟା ବସିଥିବେ ସିଂହାସନରେ କିମ୍ବା ଠିଆ ହୋଇଥିବେ ଘଣ୍ଟା ଘଣ୍ଟା ଧରି ଅତିଥିମାନଙ୍କଠାରୁ ଉପହାର ଗ୍ରହଣ କରିବା ପାଇଁ । ହସି କରି ମୁଣ୍ଡ ନୁଆଁଉ- ଥିବେ ଦୁଇଜଣ । ଫଟୋବାଲା ଫଟୋ ଉଠାଇବେ ଭିଡିଓ ପାଇଁ । ଏବେ ତ ଗୋଟେ କ୍ୟାମେରା ଆକାଶରେ ଉଡ଼ି ଉଡ଼ି ଫଟୋ ଉଠାଉଛି ଦେଖିଲି । ସେ କ୍ୟାମେରା ଗାଁ'କୁ ଗଲାଣି କି ନାହିଁ କେଜାଣି ? ତାପରେ ମୋବାଇଲ୍ ବା ଟ୍ୟାବ୍ ଧରି ଫଟୋ ଉଠାହେଉଛି । ବିଭିନ୍ନ କିସମର ପୋଷାକପତ୍ର ପିନ୍ଧି ଅତିଥି, ଅଭ୍ୟାଗତ, ଝିଅ, ପୁଅ, କୁମାରୀ, କୁମାରମାନେ ଏପଟ ସେପଟ ହୁଅନ୍ତି । ଗପସପ ହୁଅନ୍ତି । ତାରି ଭିତରେ ପୁଣି ସଙ୍ଗୀତ ଆସର ଥିବ । କେଉଁଠି କେଉଁଠି କେବଳ ସଙ୍ଗୀତର ସ୍ୱର, କେଉଁଠି

ସିନେମା ସଙ୍ଗୀତ ଓ କେଉଁଠି କେଉଁଠି ମେଲୋଡି ଚାଲିଥାଏ । ଏତେ ଭୟଙ୍କର ଶବ୍ଦର ବିସ୍ଫୋରଣ ହୁଏ ଯେ କଥାବାର୍ତ୍ତା କିଛି ଶୁଣାଯାଏନି । ଆଉ କେତେକ ଜାଗାରେ କେବଳ ମଧୁରସ୍ୱରରେ ସଙ୍ଗୀତ ଉପଭୋଗ କରିହୁଏ ।

ଆଜିକାଲି ତ ଘରେ ଆଉ ବାହାଘର ଭୋଜି ହୁଏନି । ସବୁ ହୋଟେଲରେ । 'ବଫେ ସିଷ୍ଟମ୍' ବୋଲି ତାକୁ କହନ୍ତି । ନିଜେ ନିଜେ ଥାଳି ନେଇ ଯାହା ଇଚ୍ଛା ହେବ ଖାଇବ । ଗୋଟେ ଗୋଟେ ହୋଟେଲ୍‌ରେ ଏତେ ଅତିଥି ଥାଆନ୍ତି ଯେ ଠେଲାପେଲାରେ ଖାଇ ହୁଏନି । ଧାଡ଼ି କରି ଥାଳି ଧରି ଠିଆ ହେବାକୁ ପଡ଼େ । ଅଧିକ ଆର୍ଥିକ ସ୍ୱଚ୍ଛଳତା ଥିବା ବରପିତା ବା କନ୍ୟାପିତା ଖୁବ୍ ଜାକ୍‌ଜକମରେ ବାହାଘର ଭୋଜି ଦେଇଥାନ୍ତି ।

ଖାଦ୍ୟ ହିସାବରେ ବହୁତ ପ୍ରକାରର ଖାଦ୍ୟର ଦୋକାନ ବସିଥାଏ । ବାଢ଼ିବା ବ୍ୟକ୍ତିମାନେ ଠିଆ ହୋଇଥା'ନ୍ତି ଥାଳିରେ ଖାଦ୍ୟ ଦେବା ପାଇଁ ।

ପ୍ରଥମେ ଯାହା ଦିଆଯିବ, ତାକୁ 'ଷ୍ଟାର୍ଟର୍' କୁହନ୍ତି, ତା'ପରେ ସୁପ୍, ତା'ପରେ ଚାର୍ଟ, ଗୁପ୍‌ଚୁପ୍, ବିଭିନ୍ନ ପ୍ରକାରର ମିଠା, ବିଭିନ୍ନ ପ୍ରକାରର ଆମିଷ ।

ସାଧା ତରକାରି ମଧ ବହୁ ପ୍ରକାରର, ଗଣି ହେବନି । ବାହାଘରଟିଏ ଗୋଟିଏ ବଡ଼ ପଡ଼ିଆରେ ହେଉଥିଲା । ଅତିଥି ବହୁସଂଖ୍ୟାରେ । ଟେବୁଲ୍‌ଗୁଡ଼ିଏ ପଡ଼ିଛି ପଡ଼ିଆ ମଝିରେ । ଯିଏ, ଯେମିତି, ଯାହା, ଯେଉଁଠି ଖାଇପାରିଲା ।

ମତେ ଭାବିବାକୁ ଅବସର ମିଳିଗଲା ଯେତେବେଳେ କି ଲକ୍ଷ୍ୟ କଲି ଖାଦ୍ୟ ନଷ୍ଟର ଦୃଶ୍ୟ । ଯେତେ ଖାଦ୍ୟ ନେଇଛନ୍ତି, ସେତିକି ମଧ ନଷ୍ଟ କରୁଛନ୍ତି । ଏତେ ପ୍ରକାରର ଖାଦ୍ୟ ଦେଖିଲେ ଲୋଭ ସମ୍ବରଣ କରିହେଉନି ଅତିଥିମାନଙ୍କର । ନେଇଯାଉଛନ୍ତି; ମାତ୍ର ସବୁ ଖାଇହେଉନି । ଫୋପଡ଼ା ହେଉଛି । ଖାଦ୍ୟଥାଳିଗୁଡ଼ିକ ଯେଉଁ ଡବାରେ ପକାଯାଉଛି, ସେଠି ଖାଦ୍ୟ ପାଉ ନ ଥିବା ଛୋଟପିଲାଙ୍କର ଲୋଭିଲା ଦୃଷ୍ଟି ପହଁରିଯାଉଛି । ଦିନେ ଗୋଟେ ଭୋଜି ଜାଗାରେ ଦେଖିଲି– ବାହାରେ ଅଇଁଠା ପତର ଜଣେ ପକାଇ ଦେଇ ଗଲା । ବୋଧହୁଏ ସେଥିରେ ଆଳୁଦମ୍ ଥିଲା । ଦୁଇଟି ଛୋଟ ଲଙ୍ଗଳା ପିଲା (ଯାଆଁଳା ଭଳି ଲାଗିଲା) ଆସି ଚଟ୍ କରି ଆଳୁ ଧରି ପାଟିରେ ପକେଇ ଦୌଡ଼ି ଚାଲିଗଲେ । ମୋ ଆଖି ବୁଜି ହୋଇଗଲା । ମୋର ମନେହେଲା– ଦାମିକା ନିମନ୍ତ୍ରଣ ପତ୍ର ଛାପିବାଠାରୁ ଆରମ୍ଭ କରି ଭୋଜିଭାତ ପର୍ଯ୍ୟନ୍ତ ଯେଉଁ ଅଜସ୍ର ଟଙ୍କାର ରାସ୍ତା ତିଆରି ହେଉଛି, ସେ ଟଙ୍କା କ'ଣ ସମାଜ-ଉପଯୋଗୀ ରାସ୍ତାରେ ଲଗାଯାଇପାରନ୍ତା ନାହିଁ ! ପଇସା ଆଖିବୁଜା ଖର୍ଚ୍ଚ, ପୁଣି ସେ ଖର୍ଚ୍ଚକୁ ଚାହିଁ ଏତେ ନଷ୍ଟ !

କାହିଁକି ? ବରକନ୍ୟାର ଜୀବନଯାତ୍ରାର ମଙ୍ଗଳ ପାଇଁ ତ ? ଏ ଅର୍ଥର ଯାତ୍ରା ସମାଜ ପାଇଁ କେତେ ଦୂର ସମୀଚୀନ ? କିଏ ଦେଖିବେ ଏତେ ଅର୍ଥର ଶୋଭା-ଯାତ୍ରାକୁ ? କେବଳ ଧନିକଶ୍ରେଣୀୟ ଅତିଥିଙ୍କ ପାଇଁ ଧନୀ ବ୍ୟକ୍ତିମାନଙ୍କର ଏ ନଷ୍ଟ ଆଉ ଖର୍ଚ୍ଚ !

ମନରେ ଭାବାନ୍ତର ହେଲା । ଆମ ସମାଜର ଅନେକ ବୁଦ୍ଧିଜୀବୀ, ସମ୍ଭ୍ରାନ୍ତଶ୍ରେଣୀୟ ଗୋଷ୍ଠୀସମୂହ ଓ ଯୁବସମାଜ ଅନେକ ଆନ୍ଦୋଳନ କରୁଛନ୍ତି ସେମାନଙ୍କର ଦାବି ପୂରଣ ପାଇଁ । ସେ ଦାବିରୁ କିଛି ଦାବି କାଟି ଏ ଅଯଥା ଖର୍ଚ୍ଚ ଓ ନଷ୍ଟ ପାଇଁ କଲେ ଖୁବ୍ ଭଲ ହୁଅନ୍ତା । ଅନ୍ତତଃ ଲୋକେ ତ ସଚେତନ ହୁଅନ୍ତେ !

**--ଅନସୂୟା ନନ୍ଦ**

# କିଏ ହେବା ତୋର୍ ସରି

ଶ୍ରୀ ଗୋବିନ୍ଦ ଚନ୍ଦ୍ର ତ୍ରିପାଠୀ

ନାଇଁ କର୍‌ବୁ କେଭେ ଅନିଏ କାମ୍
ସଧାବେଲେ ମଧୁର୍ ସତର୍ ଆମ୍
ସତ୍ ଧରମ୍‌କେ ଧରି ।
ଚାଲୁଥିବୁ ବଏଲେ ସଁସାର୍ ଭିତ୍‌ରେ
କିଏ ହେବା ତୋର୍ ସରି ?

ନାଇଁ ମିଲୁ ପଛେ ମଟର୍ ଗାଡ଼ି
ନାଇଁ ମିଲୁ ପଛେ ପରଦା ଶାଢ଼ୀ
ନାଇଁ ମିଲୁ କୁଠାଘର୍ ।
ଫେର୍ ବି କେଭେହେଲେ ସତ୍ ଧରମ୍‌କେ
ନାଇଁ କର୍‌ବୁ ପର୍ ।

ସତ୍ ଧରମେ ଥିଲେ ଦିନେ ନାଁ ଦିନେ
କିହେହେଲେ ଝନେ ମନ୍‌କେ ଚିହ୍ନେ
ଊନା ନାଇଁ କର୍ ମନ୍ ।
ଦୁଃଖର୍ ଉଆଁସ୍ ରାଏତ୍ ପାହୁନ୍ ପାହୁନ୍
ଉଦ୍‌ବା ସୁଖର୍ ଜନ୍ ।

ଚାଲୁଥାଆ ଧରି ସତ୍ ଧର୍‌ସା
ଇ ଜନମ୍ ତୋର୍ ହେବା ସର୍‌ସା
ମାହାପୁରୁ ହେବେ ସାହା ।
ଆପଦ୍ ବିପଦ୍ ବେଲେ ସଁକଲି ନେବେ
ପସ୍‌ରେଇ ଦୁଇ ବାହା ।

*ଭାରତୀ କୁଟୀର, ଡୁଙ୍ଗୁରିପାଲି– ୭୬୭୦୨୩*

# ଜନ୍ମମାଟିରେ ରାମକୃଷ୍ଣନନ୍ଦଙ୍କ ୧୧୦ତମ ଜୟନ୍ତୀ ସମାରୋହ

'ଆହେ ଦୟାମୟ ବିଶ୍ୱବିହାରୀ' ପ୍ରାର୍ଥନାର ସ୍ରଷ୍ଟା ପୁଣ୍ୟାତ୍ମା ରାମକୃଷ୍ଣ ନନ୍ଦଙ୍କର ୧୧୦ତମ ଜୟନ୍ତୀ ସମାରୋହ ରାମକୃଷ୍ଣ ନନ୍ଦ ସ୍ମୃତି ପରିଷଦ ଆନୁକୁଲ୍ୟରେ ଫେବୃୟାରୀ ୧୫ତାରିଖ ସଂଧ୍ୟାରେ କବିଙ୍କ ଜନ୍ମସ୍ଥାନ ବାଇରୋଇଠାରେ ପାଳିତ ହୋଇଯାଇଛି । ଏଥିରେ ସୁବାର୍ତ୍ତାର ସଂପାଦକ ପ୍ରଦ୍ୟୁମ୍ନ ଶତପଥୀ ସଭାପତିତ୍ୱ କରିଥିବାବେଳେ ପ୍ରବାସୀ ଭାରତୀୟ ଡା. ନିତ୍ୟାନନ୍ଦ ପଟ୍ଟନାୟକ ମୁଖ୍ୟ ଅତିଥି, ପ୍ରଫେସର ନିରଞ୍ଜନ ପାଢୀ ମୁଖ୍ୟବକ୍ତା, ନିର୍ମଳ ବେହେରା, କବୟତ୍ରୀ ନଳିନୀପ୍ରଭା ଦାସ, ସ୍ତମ୍ଭକାର ଶ୍ୟାମସୁନ୍ଦର ଅଗ୍ରୱାଲ ଓ କଟକ ଜିଲ୍ଲା ସର୍ବଶିକ୍ଷା ଅଭିଯାନ ପ୍ରକଳ୍ପ ସଂଯୋଜକ ଗଦାଧର ବେହେରା ସମ୍ମାନିତ ଅତିଥି ଭାବେ ଯୋଗ ଦେଇ ପୁଣ୍ୟାତ୍ମା ନନ୍ଦଙ୍କର ସ୍ମୃତିଚାରଣ କରିଥିଲେ । ଶିକ୍ଷକତାକୁ କେବଳ ବୃତ୍ତି ନୁହେଁ, ବ୍ରତ ଭାବରେ ଗ୍ରହଣ କରି ସେ ଜଣେ ଆଦର୍ଶ ଗୁରୁ, ସମାଜ ସଂସ୍କାରକ, ମୁଦ୍ରାକର, ଭାଷାବିତ୍ ସର୍ବୋପରି ଜଣେ ଶିଶୁ ବିଜ୍ଞାନୀ ବା ଶିଶୁ ସାହିତ୍ୟିକ ଭାବେ ଅମର ହୋଇ ରହିଛନ୍ତି ବୋଲି ବକ୍ତାମାନେ ମତବ୍ୟକ୍ତ କରିଥିଲେ । ରାମକୃଷ୍ଣ ନନ୍ଦ ସ୍ମୃତି ପରିଷଦ ଗଠନ କରି ପୂଜ୍ୟପୂଜା ପରମ୍ପରାକୁ ବଜାୟ ରଖିବାକୁ ଉଦ୍ୟମ ଜାରି ରଖିଥିବା ପରିଷଦର ସଂପାଦକ ତଥା ଯୁବ ସାମ୍ବାଦିକ ପ୍ରକାଶ ନନ୍ଦଙ୍କୁ ବକ୍ତାମାନେ ସାଧୁବାଦ ଜଣାଇଥିଲେ । ଏହି ଅବସରରେ ଆଶୁକବି ବାବାଜୀ ଭୋଇ, ଛାତ୍ରୀ କିରନ୍ ସାହୁ ଓ ସମ୍ମାନିତ ଅତିଥି ଗଦାଧର ବେହେରାଙ୍କୁ 'ରାମକୃଷ୍ଣ ନନ୍ଦ ସ୍ମୃତି ସମ୍ମାନ'ରେ ସମ୍ମାନିତ କରାଯାଇଥିଲା । ମା' କୁଟାମଚଣ୍ଡୀ କଳା ସଂସଦ ପକ୍ଷରୁ ସାଂସ୍କୃତିକ କାର୍ଯ୍ୟକ୍ରମ ପରିବେଷଣ କରାଯାଇଥିଲା । କାର୍ଯ୍ୟକ୍ରମରେ ବାବୁ କିଶୋର ବେହେରା, ପ୍ରଦ୍ୟୁମ୍ନ ମିଶ୍ର, ପ୍ରିୟବ୍ରତ ରାଉତରାୟ, ସରୋଜ ନନ୍ଦ, ରସାନନ୍ଦ ମଲ୍ଲିକ ପ୍ରମୁଖ ସହଯୋଗ କରିଥିଲେ । ସୂର୍ଯ୍ୟକାନ୍ତ ପଣ୍ଡା କାର୍ଯ୍ୟକ୍ରମ ଶେଷରେ ଧନ୍ୟବାଦ ଅର୍ପଣ କରିଥିଲେ ।



# ପୁସ୍ତକ ପରିଚୟ

**ରୋଗର କାରଣ ଓ ନିରାକରଣ**-- ଲେଖକ- **ଡାକ୍ତର ନିମାଇଁ ଚରଣ ପରିଜା,** ଅରୁଣୋଦୟନଗର, କଟକ-୧୨, ମୂଲ୍ୟ - ୧୧୫ ଟଙ୍କା ।

ଡିମେଇ ଆକାରର ଏହି ପୁସ୍ତକଟିରେ– ଡେଙ୍ଗୁ, ଚିକୁନ୍‌ଗୁନିଆ, ରୋଟା ଭାଇରସ୍, ଯକ୍ଷ୍ମା, କୁଷ୍ଠ, ଟିଟାନସ୍ ଆଦି ୩୭ଟି ରୋଗ ଓ ତା'ର ଲକ୍ଷଣ, କାରଣ ଓ ନିରାକରଣ ବିଷୟରେ ଉଲ୍ଲେଖ ରହିଛି । ଭିତରେ ପ୍ରତି ରୋଗର ପ୍ରାଞ୍ଜଳ ବର୍ଣ୍ଣନା ସହ ଚିତ୍ର ରହିଛି । ପ୍ରଚ୍ଛଦଟି ରଙ୍ଗିନ୍ ଏବଂ ପାଠକମାନଙ୍କର ଦୃଷ୍ଟି ଆକର୍ଷଣକାରୀ ହୋଇପାରିଛି । ପୁସ୍ତକଟି ଆଦୃତ ହେବାର ଆଶା ।

**ସୂର୍ଯ୍ୟାଲୋକର ଦ୍ୱୀପରେ କେତୋଟି ଦିନ**- ଲେଖକ- **ପ୍ରଫେସର ଡାକ୍ତର ସୁଦର୍ଶନ ପଟ୍ଟନାୟକ,** ପ୍ଲଟ୍.ନଂ-୧୫୭୧, ମହାନଦୀବିହାର, କଟକ-୪, ମୂଲ୍ୟ-୮୦ ଟଂକା ।

ଏହି ବୋର୍ଡ଼ ବନ୍ଧେଇ ଡିମେଇ ଆକାରର ପୁସ୍ତକଟିରେ ଲେଖକଙ୍କର ଶ୍ରୀଲଙ୍କା ଭ୍ରମଣର ବର୍ଣ୍ଣନା କରାଯାଇଛି । ଏହି ରାଜ୍ୟର ଐତିହାସିକ ତଥ୍ୟ ସହିତ ଏହାର ମୁଦ୍ରା, ଜନସଂଖ୍ୟା, ଅର୍ଥନୀତି, ମୁଖ୍ୟ କୃଷିଜାତ ଦ୍ରବ୍ୟ ଇତ୍ୟାଦି ପାଠକଙ୍କୁ ଶ୍ରୀଲଙ୍କା ବିଷୟରେ ଅନେକ ତଥ୍ୟ ଯୋଗାଇପାରିବ । ରଙ୍ଗିନ୍ ପ୍ରଚ୍ଛଦରେ ଶ୍ରୀଲଙ୍କାର ନୃତ୍ୟରତା ମହିଳା ଓ ପୁରୁଷଙ୍କର ଫଟୋଚିତ୍ର ସୁଦୃଶ୍ୟ ହୋଇପାରିଛି ।

**ଇବନ୍‌ବତୁତାଙ୍କର ଭ୍ରମଣ କାହାଣୀ**- ଲେଖକ- **ଡାକ୍ତର ପ୍ରମୋଦଚନ୍ଦ୍ର ପଟ୍ଟନାୟକ,** ୬୭୮ ଲକ୍ଷ୍ମୀସାଗର, ଭୁବନେଶ୍ୱର-୬, ମୂଲ୍ୟ - ୭୦ ଟଙ୍କା ।

ବିଶ୍ୱର ପ୍ରମୁଖ ପରିବ୍ରାଜକମାନଙ୍କ ମଧ୍ୟରୁ ଇବନ୍‌ବତୁତା ଯାଇଥିବା ବିଶ୍ୱର ୧୭ଟି ଜାଗାର ଭ୍ରମଣ ବୃତ୍ତାନ୍ତ ଲିପିବଦ୍ଧ ହୋଇଛି । ତାଙ୍କର ମକ୍କା ଯାତ୍ରାର ପରିକଳ୍ପନା, ଦିଲ୍ଲୀ ଦରବାରରେ ଇବନ୍‌ବତୁତା, ଶ୍ରୀଲଙ୍କାରେ, ଚୀନ୍‌ରେ, ଇରାକ୍ ଯାତ୍ରା, ଭାରତରେ ଇବନ୍‌ବତୁତା ଇତ୍ୟାଦି ବିଷୟ ପାଠକମାନଙ୍କୁ ବେଶ୍ ଆନନ୍ଦ ଦେଇପାରିବ ।

ଇବନ୍‌ବତୁତାଙ୍କ ସହିତ ବିଭିନ୍ନ ସ୍ଥାନର ଫଟୋଚିତ୍ର ମଧ୍ୟ ରହିଛି । ରଙ୍ଗିନ୍ ପ୍ରଚ୍ଛଦରେ ମରୁଭୂମିରେ ଯାତ୍ରାର ଚିତ୍ର ରହିଛି । ପୁସ୍ତକ ପାଠକମହଲରେ ଆଦୃତ ହେବାର ଆଶା ରଖୁଛୁ ।

**ହଜିଯାଉଥିବା ଆମର ଘରକରଣା** - ଲେଖକ- **ଡକ୍ଟର କୃତ୍ତିବାସ ନାୟକ,** ଭି.ଆଇ.ଏମ୍- ୫୫, ଶୈଳଶ୍ରୀ ବିହାର, ଭୁବନେଶ୍ୱର- ୨୧, ମୂଲ୍ୟ- ୬୦ ଟଙ୍କା ।

କୁଲା, ଓଳିଆ, ଚକି, ହେମଦସ୍ତା, ପଖିଆ ଇତ୍ୟାଦିର ବ୍ୟବହାର ଆଜିକାଲି ଆଉ ନାହିଁ । ଆଜିକାଲିର ପିଲାମାନେ ଏ ସବୁର ନାଁ ଶୁଣିଲେ କିଛି ବୁଝିପାରିବେନି । ୨୦ଟି ପୁରୁଣା ଘରକରଣା ଜିନିଷକୁ ନେଇ ଲେଖକ କବିତା ରଚନା କରିଛନ୍ତି । ଏ ସବୁର ଚିତ୍ର ମଧ୍ୟ ରହିଛି । ଏ ସବୁର ଭାଷା ବେଶ୍ ସରଳ ତଥା ସାବଲୀଳ ହେବା ସହିତ ଶିଶୁ-କିଶୋର ପାଠକଙ୍କ ପାଇଁ ଆଦରଣୀୟ ହେବାର ଆଶା । ରଙ୍ଗିନ୍ ପ୍ରଚ୍ଛଦରେ ଲୁଆଳି କାନ୍ଧରେ ପକାଇ ଚାଷୀଟିଏ ଯାଉଛି ଏବଂ ଶିଶୁ ଦୁଇଜଣ ବେଲୁନ୍ ଧରିଥିବାର ଦୃଶ୍ୟ ଆକର୍ଷଣୀୟ ହୋଇଛି ।

---

## ବିଦେଶ ଖବର

୧୮।୧-- ସିରିଆରେ ଆଇ.ଏସ୍ ଆତଙ୍କବାଦୀଙ୍କ ଆକ୍ରମଣରେ ୪୦୦ ପଣବନ୍ଦୀ ଓ ୩୦୦ଙ୍କୁ ହତ୍ୟା ।

୩। ୨-- ବିଶ୍ୱ ସ୍ୱାସ୍ଥ୍ୟ ସଂଗଠନ ପକ୍ଷରୁ 'ଜିକା' ଭୂତାଣୁର ଦ୍ରୁତ ପ୍ରସାରକୁ ନେଇ ଦେଶରେ ଜରୁରୀକାଳୀନ ପରିସ୍ଥିତି ଘୋଷଣା ।

୬। ୨ -- ତାଇୱାନଠାରେ ଏକ ଶକ୍ତିଶାଳୀ ଭୂକମ୍ପରେ ୧୩ ମୃତ ଓ ୩୦୦ଆହତ ।

୭।୨-- ସିଆଚେନ୍ ଗ୍ଲାସିଆରଠାରେ ବରଫ ଅତଡ଼ା ଖସି ୧୦ ଜଣ ଭାରତୀୟ ଯବାନ ମୃତ ।

୮।୨-- ତାଇପେଠାରେ ୧୯୪୫ ଅଗଷ୍ଟ ୧୮ ତାରିଖରେ ହୋଇଥିବା ବିମାନ ଦୁର୍ଘଟଣାରେ ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କର ମୃତ୍ୟୁ ହୋଇଥିଲା ବୋଲି ଜାପାନୀ ଅନୁବାଦକ କାଜୁନୋରୀ କୁନିଜୁକା ସ୍ପଷ୍ଟ କରିଛନ୍ତି ।

୧୧। ୨— ବିଶିଷ୍ଟ ବୈଜ୍ଞାନିକ ଆଇନଷ୍ଟାଇନ୍‌ଙ୍କର 'ଆପେକ୍ଷିକ ତତ୍ତ୍ୱ'ର ପ୍ରମାଣ ମିଳିଯାଇଛି । ଏହା ମହାକାଶ ବିଜ୍ଞାନର ଏକ ବିରାଟ ସଫଳତା ।

## ଶବ୍ଦଧନ୍ଦା ମାର୍ଚ୍ଚ-୨୦୧୬

ଶ୍ରୀ କଳ୍ପତରୁ ନାୟକ

୧ । କାଗଜରେ ବା କାର୍ଡ଼ରେ ଘର କାଟି ଉତ୍ତର ଲେଖନ୍ତୁ ।
୨ । ଶୂନ୍ୟ ଘରେ ଗୋଟିଏ ମାତ୍ର ଅକ୍ଷର ବସାନ୍ତୁ ।
୩ । ଉତ୍ତର କାଗଜରେ ନାମ ଓ ଠିକଣା ଲେଖନ୍ତୁ ।
୪ । ସମ୍ପାଦିକାଙ୍କ ନିଷ୍ପତ୍ତି ଚୂଡ଼ାନ୍ତ ।
୫ । ଆସନ୍ତା ସଂଖ୍ୟାରେ ଫଳ ପ୍ରକାଶ ପାଇବ ।
୬ । ଉତ୍ତର ପହଞ୍ଚିବାର ଶେଷ ତାରିଖ ୨୨ ।୩ ।୨୦୧୬
୭ । ନିୟମାବଳୀ ପଢ଼ି ଉତ୍ତର ଦିଅନ୍ତୁ ।

| | | | | | | |
|---|---|---|---|---|---|---|
| ୧ | | | ୨ | ୩ | ୪ | ୫ |
| ୬ | | ୭ | | | ୮ | |
| ୯ | ୧୦ | | | ୧୧ | | |
| ୧୨ | | | ୧୩ | | | ୧୪ |
| | | ୧୫ | | | ୧୬ | |
| | ୧୭ | | | ୧୮ | | |
| ୧୯ | | | | | | |

### ସୂଚନା

**ବାମରୁ ଡାହାଣ--** ୧ । ଶିବ (୪), ୪ । ରାଧା (୨), ୬ । ସୂର୍ଯ୍ୟ (୩), ୮ । କାଇଁଶ ତୃଣ (୨), ୯ । ଶ୍ରୀରାମ-ମହିଷୀ (୨), ୧୧ । ରାବଣଜନନୀ (୩), ୧୩ । ନୃତ୍ୟପ୍ରିୟ ଶ୍ରୀକୃଷ୍ଣ (୪), ୧୫ । ଶ୍ରୀକୃଷ୍ଣଙ୍କ ବୈମାତ୍ର ଭ୍ରାତା (୪), ୧୭ । ଦୁର୍ଗା (୪), ୧୯ । ସୂର୍ଯ୍ୟ (୪) ।

**ଉପରୁ ତଳ--** ୨ । କାର୍ତ୍ତିକେୟ (୪), ୩ । ହନୁମାନ (୩), ୪ । ପୂର୍ଣ୍ଣିମା ତିଥି (୨), ୫ । ପ୍ରଭୁ (୨), ୭ । ବ୍ରାହ୍ମଣ (୪), ୧୦ । ବଳଭଦ୍ରଙ୍କ ରଥ (୪), ୧୨ ।ଦେବଗୁରୁ (୪), ୧୪ । ବିଷ୍ଣୁ (୪), ୧୬ । ଇନ୍ଦ୍ର (୩), ୧୮ । ବାଳୀର ସ୍ତ୍ରୀ (୨) ।

*--ରମ୍ପେଇ, ବାଟିଯୋଡ଼ା, ଯାଜପୁର-୭୫୫୦୨୩*

---

**ଫେବୃୟାରୀ ମାସ ଶବ୍ଦଧନ୍ଦାର ଉତ୍ତର (ବାମରୁ ଡାହାଣ)--** ୧ । ରଜନୀ, ୪ । ଗୋଦାବରୀ, ୭ । ମକର, ୮ । ଆଳତି, ୧୦ । ସରସିଜ, ୧୨ । ତାରାତାରିଣୀ, ୧୪ । ବିକାଶ, ୧୮ । ଇଜତ ।

**ଉପରୁ ତଳ--** ୧ । ରମଜାନ, ୨ । ଜକ, ୩ । ନୀର, ୫ । ବଳ, ୬ । ରୀତି, ୯ । ତମସା, ୧୦ । ସବିତା, ୧୧ । ସିକତା, ୧୩ । ରିଆଜ, ୧୪ । ବିଷ, ୧୫ । ଶର, ୧୬ । ଉଇ, ୧୭ । ଗାତ ।

---

**ଗତମାସର ଠିକ୍ ଉତ୍ତରଦାତା- ନିଶିକାନ୍ତ ବେହେରା,** ହିନ୍ଦୋଳ ରୋଡ଼, ଢେଙ୍କାନାଳ; **ବସନ୍ତ କୁମାର ମହାପାତ୍ର,** ଯଶୋବନ୍ତପୁର, ଜଗତ୍‌ସିଂହପୁର; **ରାଜକିଶୋର ସାହୁ,** ଓଡ଼ଗାଁ, ନୟାଗଡ଼; **ରସାନନ୍ଦ ଘଡ଼େଇ,** ପୁଆଣିଆଁ, ନୟାଗଡ଼ ।

**ଏକ ଭୁଲ ଉତ୍ତରଦାତା- ପ୍ରଭାତ କୁମାର କୁଅଁର, ରାସେଶ୍ୱର ମହାନ୍ତ ।**

**ବିଳମ୍ବରେ ଆସିଥିବା ଜାନୁଆରୀ ମାସ ଶବ୍ଦଧନ୍ଦାର ଠିକ ଉତ୍ତର- ସୁନୀତା ରାଜ, ଅନନ୍ତ ଚରଣ ପାଢ଼ୀ ।**

# ପୃଥିବୀ କ୍ଷଣକ୍ଷଣକେ ଆନ

## ଓଡ଼ିଶା ଖବର

୧୯। ୧-- ଏୟାର୍ ଓଡ଼ିଶାର ବିମାନସେବା ଆରମ୍ଭ। ରାଜଧାନୀରୁ ଏହା ରାଉରକେଲା, ସମ୍ବଲପୁର, ଝାରସୁଗୁଡ଼ା ଓ ଜୟପୁରକୁ ଯାତ୍ରା କରିବ।

୨୧। ୧-- ଡକ୍ଟର ରାଜେନ୍ଦ୍ର ପ୍ରସାଦ ଶର୍ମା ଓ ବିଜୟ କୁମାର ଶର୍ମା ଯଥାକ୍ରମେ ଭିଜିଲାନସ୍‌ର ନିର୍ଦ୍ଦେଶକ ଓ କ୍ରାଇମବ୍ରାଞ୍ଚର ନିର୍ଦ୍ଦେଶକ ଭାବେ ଏବଂ ଏ.ଡି.ଜି ଯୋଗେଶ ବାହାଦୁର ଖୁରାନିଆ କଟକ-ଭୁବନେଶ୍ୱରର ପୁଲିସ କମିଶନର ଭାବେ ଅବସ୍ଥାପିତ।

୨୨। ୧-- କଟକ ମହାନଗର ନିଗମର ମେୟର ଭାବେ ମୀନାକ୍ଷୀ ବେହେରା ନିର୍ଦ୍ଵନ୍ଦରେ ନିର୍ବାଚିତ।

୩।୨-- ମହାନଦୀ-ଗୋଦାବରୀ ନଦୀ ସଂଯୋଗୀକରଣ ଯୋଜନା ଗୃହୀତ। ଏହାର ଅଟକଳ ୩୦ ହଜାର କୋଟି।

୬।୨-- ପାରାଦ୍ୱୀପ ଠାରେ ଆଇଓସିଏଲ୍‌ର ତୈଳ-ବିଶୋଧନାଗାର ପ୍ରଧାନମନ୍ତ୍ରୀ ନରେନ୍ଦ୍ର ମୋଦିଙ୍କ ଦ୍ୱାରା ଜାତି ଉଦ୍ଦେଶ୍ୟରେ ସମର୍ପିତ।

୭। ୨-- ନାଗପୁରରେ ଅନୁଷ୍ଠିତ ୧୨ଶ ସିନିଅର ଗେଟ୍ ବଲ୍ ଚାମ୍ପିଅନ୍‌ସିପ୍‌ରେ ଓଡ଼ିଶାର ମହିଳା ଓ ପୁରୁଷ ଦଳଙ୍କର ସ୍ୱର୍ଣ୍ଣପଦକ ହାସଲ।

୧୪।୨-- 'ମେକ୍ ଇନ୍ ଓଡ଼ିଶା'ର ପ୍ରାରମ୍ଭିକ ସଫଳତା ହାସଲ। ୫୬ ହଜାର ୪୦୦ କୋଟି ଟଙ୍କାର ପୁଞ୍ଜିନିବେଶ ପାଇଁ ବିଦେଶୀ ଆଗ୍ରହୀ।

-- ଜଷ୍ଟିସ୍ ପ୍ରଦୀପ କୁମାର ମହାନ୍ତିଙ୍କର ଓଡ଼ିଶା ହାଇକୋର୍ଟର ପଞ୍ଚମ ଥର ପାଇଁ ମୁଖ୍ୟ ବିଚାରପତି ଦାୟିତ୍ୱ ଗ୍ରହଣ।

୧୫। ୨-- ବିଶିଷ୍ଟ ଲେଖିକା ଶକୁନ୍ତଳା ବଳିୟାର ସିଂ ଅନୁବାଦ ସାହିତ୍ୟ ପାଇଁ ଚଳିତ ବର୍ଷର ସମ୍ମାନଜନକ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପାଇଁ ମନୋନୀତ।

## ଭାରତ ଖବର

୨୧।୧-- ରିଜର୍ଭ ବ୍ୟାଙ୍କ୍ ଅଫ୍ ଇଣ୍ଡିଆ ଦ୍ୱାରା ୧୦୦୦ ଟଙ୍କିଆ ନୋଟ ୧୦ ହଜାର କୋଟି ଟଙ୍କା ବଜାରକୁ ଛଡ଼ାଯାଇଛି। ଏହାକୁ ଜାଲ୍ ନୋଟ ଭାବେ ବିବେଚିତ କରାଯିବ।

୨୦।୧-- ଚଳିତ ବର୍ଷରେ ୨୫ ଜଣଙ୍କୁ ରାଷ୍ଟ୍ରୀୟ ବୀରତ୍ୱ ପୁରସ୍କାର ପ୍ରଦାନ। ଓଡ଼ିଶାର ଅବିନାଶ ମିଶ୍ର ଏଥିରେ ଅନ୍ତର୍ଭୁକ୍ତ।

-- ସିକିମ୍ ଦେଶ ପ୍ରଥମ 'ଜୈବିକ କୃଷିରାଜ୍ୟ' ଭାବେ ଘୋଷିତ।

୨୫।୧-- ଅମିତ ଶାହା ଦ୍ୱିତୀୟଥର ପାଇଁ ବି.ଜେ.ପି.ର ରାଷ୍ଟ୍ରୀୟ ଅଧ୍ୟକ୍ଷ ନିର୍ବାଚିତ।

୨୬।୧-- ୬୬ତମ ସାଧାରଣତନ୍ତ୍ର ଦିବସ ଅବସରରେ ୨୦୧୬ ପାଇଁ ୧୧୨ ଜଣ ପଦ୍ମ ପୁରସ୍କାର (୧୦ଜଣ ପଦ୍ମବିଭୂଷଣ, ୧୯ଜଣ ପଦ୍ମଭୂଷଣ ଓ ୮୩ଜଣ ପଦ୍ମଶ୍ରୀ) ପାଇଁ ବିବେଚିତ। ଓଡ଼ିଶାର ୩ଜଣ-- ହଳଧର ନାଗ, ନୀଳମାଧବ ପତ୍ରୀ ଓ ଶ୍ରୀଭାଷ ସୁପକାର ପଦ୍ମଶ୍ରୀ ପାଇଁ ମନୋନୀତ।

୨୭।୧-- ମହିଳା ଆଇ.ପି.ଏସ୍ ଅଫିସର ଅପର୍ଣ୍ଣା କୁମାର ଆଣ୍ଟାର୍କଟିକାର ଉଚ୍ଚତମ ଶୃଙ୍ଗ ମାଉଣ୍ଟ୍ ଭିନ୍‌ସନ୍ ମାସିଫ୍‌ଠାରେ ଜାତୀୟ ପତାକାକୁ ଉଡ଼ାଇ ଦେଶର ଗୌରବ ବୃଦ୍ଧି କରିଛନ୍ତି।

୨୮।୧-- କେନ୍ଦ୍ର ସରକାର ପ୍ରଥମ ପର୍ଯ୍ୟାୟରେ୯୭ଟି ସହରରୁ ୨୦ଟି ସହରକୁ ସ୍ମାର୍ଟ ସିଟି ମିଶନ୍‌ରେ ସାମିଲ୍ କରିଛନ୍ତି। ଏଥିରେ ପ୍ରଥମ ୨୦ଟିରେ ଭୁବନେଶ୍ୱର ପ୍ରଥମ।

୨୯।୧-- ମେଲ୍‌ବୋର୍ଣ୍ଣଠାରେ ଅଷ୍ଟ୍ରେଲିଆନ୍ ଓପନ୍ ଗ୍ରାଣ୍ଡସ୍ଲାମ୍ ଟେନିସ୍ ଟୁର୍ଣ୍ଣାମେଣ୍ଟରେ ସାନିଆ ମିର୍ଜା ଓ ଭାରତୀୟ ମହିଳା କ୍ରିକେଟ୍ ଦଳର ପ୍ରଥମ ଦ୍ୱିପାକ୍ଷିକ ବିଜୟ ହାସଲ ଏବଂ ଅଷ୍ଟ୍ରେଲିଆ ବିରୋଧରେ ପ୍ରଥମଥର ପାଇଁ ଟ୍ୱେଣ୍ଟି୨୦ ସିରିଜ୍ ଜିତିଛନ୍ତି ଭାରତୀୟ କ୍ରିକେଟ୍ ଦଳ।

୨।୨-- ବରିଷ୍ଠ ଆଇ.ପି.ଏସ୍ ଅଧିକାରୀ ଅର୍ଚ୍ଚନା ରାମାସୁନ୍ଦରମ୍ ଦେଶରେ ନୂତନ ଇତିହାସ ରଚି ସଶସ୍ତ୍ର ସୀମାବଳ (ଏସ୍.ଏସ୍.ବି.)ର ମହାନିର୍ଦ୍ଦେଶକ ନିଯୁକ୍ତ।

୩।୨-- ପୂର୍ବତନ ଲୋକସଭା ବାଚସ୍ପତି ଓ କଂଗ୍ରେସର ବୟୋବୃଦ୍ଧ ନେତା ବଳରାମ ଜାଖଡ଼ଙ୍କର ୯୨ ବର୍ଷରେ ପରଲୋକ।

୪।୨-- ବିଶ୍ୱର ପ୍ରଥମ 'ଜିକା' ଭୂତାଣୁ ଟିକା ହାଇଦ୍ରାବାଦର ବୈଜ୍ଞାନିକମାନଙ୍କ ଦ୍ୱାରା ନିର୍ମିତ ହେଲା।

୬।୨-- ଲବ୍ଧପ୍ରତିଷ୍ଠ ବ୍ୟଙ୍ଗ ଚିତ୍ରକର ପଦ୍ମଶ୍ରୀ ସୁଧୀର ତୈଲଙ୍ଗଙ୍କର ୫୬ ବର୍ଷରେ ପରଲୋକ।

୧୩।୨-- ଓଡ଼ିଆ ଆଇ.ଏଫ.ଏସ୍. ଅଧିକାରୀ ବିରଜା ପ୍ରସାଦଙ୍କର ଅକାଳ ବିୟୋଗ। ସେ ତାଜାକିସ୍ଥାନର ଭାରତର ରାଷ୍ଟ୍ରଦୂତ ଭାବେ କାର୍ଯ୍ୟ କରୁଥିଲେ।

( ଅବଶିଷ୍ଟାଂଶ ୫୨ ପୃଷ୍ଠାରେ)

EDITED, PRINTED & PUBLISHED BY ANASUYA NANDA AT SANSAR PRESS, TALATELENGA BAZAR, CUTTACK-753009, Ph : 2420075, 2422597